**ପ୍ରୌଢ଼ ଭାବନା**—ଲେଖକ : ହୃଷୀକେଶ ପଣ୍ଡା, ପ୍ରକାଶକ : ସହଦେବ ପ୍ରଧାନ, ଫ୍ରେଣ୍ଡ୍‌ସ୍ ପବ୍ଲିଶର୍ସ, ବିନୋଦବିହାରୀ, କଟକ-୭୫୩୦୦୨, ପ୍ରଥମ ସଂସ୍କରଣ : ୧୯୯୨, ପ୍ରଚ୍ଛଦପଟ : ଅସିତ୍ ମୁଖାର୍ଜୀ, ମୁଦ୍ରାକାର : ନନ୍ଦକିଶୋର ପ୍ରେସ୍, ଡଗରପଡ଼ା, କଟକ-୨



**PRAUDHA VABANA** – Author : Hrusikesha Panda, I.A.S., Publisher : Sahadev Pradhan, Friends' Publishers, Binodbehari, Cuttack-753002, Orissa (India), First Edition : 1992, Cover Design : Asit Mukherji, Printer : Nandakishore Press, Dagarapara, Cuttack-2

PRICE : Rs. 25

## ଲେଖକଙ୍କର ଅନ୍ୟାନ୍ୟ ଲେଖା :

**ଗଳ୍ପସଂକଳନ :**

ବାହାରେ ଛଡ଼ାହୋଇଥିବା ଲୋକ
ରେବତୀ
ରାଜପୁତ୍ର
ସାହାବଦେବତା

**ଉପନ୍ୟାସ :**

ଶୁନ୍ ସାଂଗେ ସାମୟିକ ସନ୍ଧି
ହରଣ ପିଠିରେ ଅଜଣା ସୂର୍ଯ୍ୟାସ୍ତ
ସୁନାପୁଟ୍ଟର ଲୋକେ

**ଅନ୍ୟାନ୍ୟ :**

Arts & Crafts of Ganjam district.

# ସୂଚୀପତ୍ର


| ବିଷୟ | | | ପୃଷ୍ଠା |
| --- | --- | --- | --- |
| ୧ । | ରଘୁଅଜା | ... | ୧ |
| ୨ । | ଏକ ନିରର୍ଥକ ଯୌବନ ମିଳାଇଯାଏ ଅବାନ୍ତର ବାର୍ଦ୍ଧକ୍ୟରେ | ... | ୮ |
| ୩ । | ଜୀବନ ଏଠି ନାହିଁ ! -ମୁଁ ଏଠି ନାହିଁ ! ଆଉ କୋଉଠି, ଆଉ କୋଉଠି ! | ... | ୨୦ |
| ୪ । | ସାଧବ ପୁଅ | ... | ୨୯ |
| ୫ । | ପାର୍ଲି | ... | ୩୬ |
| ୬ । | ରେବତୀ | ... | ୪୧ |
| ୭ । | ତତ୍ତ୍ୱ ଆମର ସାଙ୍ଗ, ଘର ଭଲ ସାଙ୍ଗ | ... | ୫୧ |
| ୮ । | ସାବତ୍ରୀ, ସତ୍ୟବାନ ଓ ତରଣୀସେନ୍ ଦାସ | ... | ୫୮ |
| ୯ । | ମେଣ୍ଢା | ... | ୭୪ |
| ୧୦ । | ଧର୍ମପଦ | ... | ୮୧ |
| ୧୧ । | ସନାତନ ସବୁଦିନେ କ୍ଲବ୍ ଯାଏ | ... | ୯୧ |
| ୧୨ । | ପୁସି | ... | ୯୬ |
| ୧୩ । | ପୃଷ୍ଠବନ୍ଧ | ... | ୧୦୩ |




# ରଘୁଅଜା

ରଘୁଅଜାଙ୍କର ଗୋଟେ ଫୋଟୋ ଏବେ ଆମ ଦାଣ୍ଡଘରେ ଟଙ୍ଗା ହୋଇଛି । ତାଙ୍କ ପାଖେ ଆଈ, ଆଈର ମୁହଁ ଦିଶୁନାହିଁ, ସେ ଏଡ଼େ ଲମ୍ବା ଓଢ଼ଣୀ ଟାଣିଚି ଯେ, "ଫୋଟୋ ଯାହା ଉଠେଇବାକୁ ଯାଇଥିଲା ମଲା ନାହିଁ ଯାହା" ବୋଲି ସେ ବଞ୍ଚିଥିଲା ବେଳେ ସମସ୍ତେ କହୁଥିଲେ । ଏବେ ଅବଶ୍ୟ ଆଈ ମରିଗଲାଣି । ରଘୁଅଜା ଫୋଟୋରେ ଏବେ ବି ଚକିତ ଦିଶନ୍ତି (ଯଦିଓ ଫୋଟୋ ହଳଦିଆ ହୋଇ, ଠା'କୁ ଠା' ହଳଦିଆ ଗୁଡ଼ି କାଗଜ ଧଳା ଦିଶିଲାଣି ), ହେଲେ ଯେମିତି ଫୋଟୋ ଉଠିଲା ବେଳେ ସେ ସ୍ମିତ ହସିବାକୁ ଯାଉଥିଲେ ଓ ଫୋଟୋବାଲା ତାଙ୍କୁ 'ଏଇକ୍— କାହିଁକି ହସୁଚ' ବୋଲି କହି ଚମକେଇ ଓ ଡରେଇ ଦେଇଛନ୍ତି । କିନ୍ତୁ ଫୋଟୋର ସେଇ ନିର୍ବୋଧ ଚକିତ ପାତଳା ଲୋକଟିକୁ ଦେଖି କେହି ଭୁଲରେ ବି ଜାଣିପାରିବେ ନାହିଁ ଯେ ରଘୁଅଜା ଏଡ଼େ ଖରାପ ଲୋକଟିଏ ଥିଲେ ।

ଖାଲି ଖରାପ କ'ଣ, ସେ ଲକ୍ଷ୍ମୀଛଡ଼ା ବି ଥିଲେ । ମରିଗଲେଣି କାହିଁ କେଉଁ କାଳରୁ, ତାଙ୍କ ଲକ୍ଷ୍ମୀଛଡ଼ା ଯୋଗ ଏମିତି ଯେ କାହାକୁ ଛାଡ଼ୁନାହିଁ, ଯେ ତାଙ୍କ ପାଖେ ପଶିଲା, ସେ ମଲା । ସେଥିପାଇଁ ତାଙ୍କ କଥା କେହି ତୁଣ୍ଡରେ ନିଅନ୍ତି ନାହିଁ, ମୋତେ ଲକ୍ଷ୍ମୀଛଡ଼ା ଯୋଗ ନପଡ଼ିଥିଲେ ମୁଁ ବି ନେଇ ନଥାନ୍ତି । ସେ ତ ମଲେ ନିଅଂଶୀ ହୋଇ, କାଳକାଳକୁ ହନ୍ତସନ୍ତ କଲେ ଛୁଆଆଈକୁ; କାରଣ ସେ ତ ମଲେ ଗଲେ, ମଲାଠୁ ଗଲାଠୁ ସୁନାମ ବଦନାମ ଆଉ କ'ଣ, ତାଙ୍କ ବଦନାମର ବୋଝ ବୋହିଲା ବିଚାରୀ ଛୁଆଆଈ । ( ଛୁଆଆଈ, ମାନେ ରଘୁଅଜାଙ୍କ ସ୍ତ୍ରୀ ) । ସେ କାଳେ ବଞ୍ଚିଥିବାବେଳେ ଏତେ ବଦନାମ ନଥିଲେ, ତାଙ୍କ ଘରେ ପଣ୍ଡିତ ଗୋପବନ୍ଧୁଙ୍କ ଦଶ ଲୋକ ଆସି ରହିକି ଯାଉଥିଲେ; ମରିଗଲା ପରେ ପରେ ବି ଏତେ ବଦନାମ ହୋଇନଥିଲେ । କେତେ ବର୍ଷ ବିତିଗଲା, ସ୍ୱାଧୀନତାର କେତେ ବର୍ଷ ପରେ, ସ୍ୱାଧୀନତା ସଂଗ୍ରାମରେ ଲଢ଼ିଥିବା କିଛି ଲୋକ କ୍ଷମତାକୁ ଆସିଲେ । (ଦୁର୍ବଳ ଲୋକେ ଦିନେ ବିଶ୍ୱର ଉତ୍ତରାଧିକାରୀ ହେବେ, କିନ୍ତୁ ସେମାନେ ଆଉ ଦୁର୍ବଳ ରହିବେ ନାହିଁ; ତେଣୁ

ଦୁର୍ବଳ ଲୋକେ ଉତ୍ତରାଧିକାରୀ କେମିତି ହେବେ ? ) ତେବେ ସ୍ୱାଧୀନତା ସଂଗ୍ରାମରେ ଲଢ଼ିଥିବା ଅଧିକାଂଶ ଲୋକ ନିଜ ନିଜ କାମଧନ୍ଦାକୁ ଫେରିଗଲେ ଓ କ୍ରମେ ବିସ୍ମୃତ ବା ମୃତ ହେଲେ । ଏମିତି କେତେ କାଳ ଚାଲିଗଲା ।

କେତେକାଳ ପରେ ଶାସକମାନେ ଦେଖିଲେ କୌଣସି କାରଣରୁ ମ୍ୟାଜିକ୍ ଆଉ କାମ କରୁନାହିଁ, ତା' ଛଡ଼ା ଚାରିଆଡ଼ ବେଶି ଖୋଲାମେଲା ହୋଇଯାଉଛି, ପାର୍ଟିଗୁଡ଼ା ଚାରିଆଡ଼େ ବେଶି ବେଶି ଶୁଭୁଛି; ମନ ବହଲେଇବା ପାଇଁ ଗୋଟେ କୋଦଦାର୍, ଜୋସ୍‌ଦାର ଚମକପ୍ରଦ ଆଖଡ଼ା ଦରକାର । ତହୁଁ ଆରମ୍ଭ ହେଲା ମହାନ୍ ସ୍ୱାଧୀନତା ସଂଗ୍ରାମ ନାଟକ । ନିଜ ନିଜ କାମ ଧନ୍ଦାରେ ଲୁଚିଛପି ବିସ୍ମୃତ ଜୀବନ ଯାପନ କରୁଥିବା ସ୍ୱାଧୀନତା ସଂଗ୍ରାମୀମାନେ ସ୍ୱା'ଭିତରେ ଏତେ ପୁରୁଣାକାଳିଆ ଓ ସାମ୍ପ୍ରତିକ ରାଜନୈତିକ ଆଗ୍ରହ ସମ୍ପର୍କରେ ଏତେ ଅନଭ୍ୟସ୍ତ ହୋଇଯାଇଥିଲେ ଯେ ସେମାନେ ଲୋକ ଲୋଚନକୁ ଆସିଲେ; ଆଉ ପ୍ରତିଦ୍ୱନ୍ଦ୍ୱୀ ହେବାର ସମ୍ଭାବନା ନଥିଲା । ତେଣୁ ଏ ସ୍ୱାଧୀନତା ସଂଗ୍ରାମ ନାଟକ ଅଭିନୟ କାଳରେ ମୃତ ଓ ଜରାପ୍ରାପ୍ତ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ସ୍ମରଣ କରିବା ଅବସରରେ ଜୀବିତ ଓ ବିସ୍ମୃତ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ଆଲୋକିତ ସଭାମଣ୍ଡପମାନଙ୍କୁ ଡକାଯାଇ ଫୁଲମାଳ ସମାଭିବ୍ୟାହାରରେ ସମ୍ବର୍ଦ୍ଧିତ କରାଗଲା । ଅନେକ କାଳ ଅନ୍ଧାରରେ ବା ଲଣ୍ଠନ ଆଲୁଅରେ ଚଳିଆସିଥିବା ଏହି ସ୍ୱାଧୀନତା ସଂଗ୍ରାମୀମାନେ ଅବଶ୍ୟ ଜୁଳୁଜୁଳୁ କରି ଅନେଇଲେ ଓ ବକ୍ତୃତା ଦେବାକୁ ଯାଇ ଭାବପ୍ରବଣତାରେ ଥରି ଥରି ଜନତାଙ୍କୁ ନମସ୍କାର କରିବା ବ୍ୟତିରେକେ ଅଉ କିଛି କରିପାରିଲେ ନାହିଁ । ଏହିପରି ସଭାମାନ ସାରା ଦେଶରେ ଅନୁଷ୍ଠିତ ହେଉଥିଲା; କିନ୍ତୁ ଏପରି ଏକ ସଭା ଯେ ଶେଷରେ ଆମ ମାମୁଘର ଗାଁରେ ହେବ ଓ ମୋର ରଘୁଅଜା ( ସେ ମୋର ନିଜ ଅଜା ନୁହନ୍ତି ) ଯେ ଜଣେ ସାଧାରଣ ମଣିଷରୁ ନରହନ୍ତାକୁ ଛିଟିପଡ଼ିବେ, ଏସବୁ ତାଙ୍କ ଲକ୍ଷ୍ମୀଛଡ଼ା ଭାଗ୍ୟଛଡ଼ା ଆଉ କୋଉଥିପାଇଁ ହୋଇଥିବ ?

କୋଉ କାଳର କଥା—ରଘୁଅଜା ଯେବେ ବଞ୍ଚିଥିଲେ । ମାମୁ ଘର ଗାଁରେ ସମସ୍ତେ ଶ୍ରେଷ୍ଠ ବଡ଼ କରି ଜମିଦାର ଥିଲେ; ଯନ୍ଦିଓ ଯୋଉଦିନକୁ ରଘୁଅଜା ଜଣେ ସାଧାରଣ ସର୍ଗତ ଲୋକରୁ ନରହନ୍ତାକୁ ଛିଟିପଡ଼ିଲେ, ସେଦିନକୁ ଜମିଦାରମାନଙ୍କ ଭିତରୁ ଅଧିକାଂଶ ଭିକାରୀ ହୋଇଯାଇଥିଲେ । ଗାଁର ସବୁଠୁ ପୃଥୁଳକାୟ ଓ ଖାଦ୍ୟପ୍ରିୟ ପରିବାର ହିସାବରେ ଏକଦା ପ୍ରସିଦ୍ଧ ଥିବା ଖଡ଼୍‌ଗପ୍ରସାଦ ଘରେ ସବୁ ପିଲାଏ ଖଡ଼ିକା ପରି ସରୁ ହୋଇଯାଇଥିଲେ ଓ 'ଝୋଟକଳ'ରେ ମଜୁରିଆ ଭାବରେ କାମ କରୁଥିଲେ । ( ପାଣିପାଇପ୍ କାମଠୁ ଘରେ ଚାକର କାମ ପର୍ଯ୍ୟନ୍ତ ବିଦେଶରେ ଯୋଉ କାମରେ ଯେ ଯାଉ, ସେଇଟା ଝୋଟକଳ 'କାମ ବୋଲି କୁହାଯାଏ ) । ଛୁଆ ଅଛି

ଏବେବ ଗୋଟେ ଚେଲ ସ୍କୁଲ୍ ଥିଲା । ଜମିରୁ କିଛି ଧାନ ଯାହା ଅସୁଥିଲା, ମୂଲମଜୁର, ଗ୍ରେଇ ଓ ମୂଷାଖିଆ ଯାଇ ବି ବର୍ଷକ ଚଳିଯାଉଥିଲା, ହେଲେ ତରକାରି ଧରିଲେ ଯୋଗାଡ଼ କରିବା କଷ୍ଟ ଥିଲା, ସେଥିପାଇଁ ଛୁଆଅଛି ଗୋଟେ ଚେଲ ସ୍କୁଲ୍ ଥିଲା । ତାଙ୍କ ଜବଦଣାରେ ରଘୁଅଜା କି ଛୁଆଅଛି କିଛି ପୋଖତ ଜମିଦାର କି ଜମିଦାରିଆଣୀ ନଥିଲେ; ସତକଥା କହିଲେ ରଘୁଅଜାଙ୍କ ଜମିଦାରୀ ସବୁଠୁ ଗ୍ରେଟିଆ ମାନେ ଶୁନ ଥିଲା । କିନ୍ତୁ ସେ ସାହସୀ ଥିଲେ; ଖଣ୍ଡା ଓ ଦୁଇନଳିଆ ବନ୍ଧୁକ ଚଳେଇ ଜାଣିଥିଲେ ଓ ଥରେ ଟ୍ରେନ୍‌ରେ ଡକାୟତମାନଙ୍କ ସାଙ୍ଗେ ଲଢ଼ି ଗୋଟେ କମ୍ପାର୍ଟମେଣ୍ଟ୍‌ର ଲୋକଙ୍କୁ ଖୁନ୍‌ଖରାବରୁ ବଞ୍ଚେଇଥିଲେ । ତାଙ୍କର ଏ ସାହସିକତା ପାଇଁ ଓ ଜମିଦାରୀ ନଥିବା କଥା ଭାବି ତାଙ୍କୁ ସେ ଅଞ୍ଚଳର ଚୌକିଆ ପ୍ରେସିଡ଼େଣ୍ଟ୍ କରାଯାଇଥିଲା । ସେ ଅଞ୍ଚଳର ଶାନ୍ତିଶୃଙ୍ଖଳା ଉପରେ ଜଣେ ଅରେଜୀ ମାଜିଷ୍ଟ୍ରେଟ୍ ପରି କାମ କରିବା ଛଡ଼ା, ଚୌକିଆମାନଙ୍କର ଦୌରାତ୍ମ୍ୟରୁ ଲୋକଙ୍କୁ ରକ୍ଷା କରିବା ମଧ ତାଙ୍କର ଦାୟିତ୍ୱ ଥିଲା ।

ଏମିତି ହେଲା—ସ୍ୱାଧୀନତା ଆନ୍ଦୋଳନ ସମୟରେ, ମଝିରେ ଥରେ ଗାଁକୁ ଗାନ୍ଧିଜୀଙ୍କର ଗସ୍ତ ପଡ଼ିବ ବୋଲି ସ୍ଥିର ହେଇଗଲା । ଆଗେ ଆସିଲେ ଦାଶେ ଆପଣେ, ସେ ରଘୁଅଜାଙ୍କ ଘରେ ରହିଲେ, ବଡ଼ ପରସ୍ତ, ବଡ଼ ବୈଠକଖାନା, ଦୁନିଆସାରା ଲୋକଙ୍କ ବସିବା ପାଇଁ ଜାଗା ଅଛି । ସେ କହିଲେ ଗାନ୍ଧିଜୀ ଆସିବେ ନାହିଁ, ସ୍ୱାଧୀନତା ଆନ୍ଦୋଳନ ବିଷୟରେ ଖାଲି କହିବା ପାଇଁ ସେ ଆସିଛନ୍ତି । ମେଲଣ ପଡ଼ିଆରେ ସଭା ହେବ । ରଘୁଅଜା କହିଲେ, ଏଇଟା କ'ଣ ନିଧାର୍ଯ୍ୟ ? ଦାଶେ ଆପଣ କହିଲେ, ହଁ । ରଘୁଅଜା କହିଲେ, ତା'ହେଲେ ମୁଁ ତ ଥାନାକୁ ଖବର ଦେବି । ଦାଶେ ଆପଣେ କହିଲେ, ହଁ ଦିଅନ୍ତୁ, ତା'ଛଡ଼ା ସେମାନେ କୋଉ ନଜାଣିଚନ୍ତି ? ରଘୁଅଜା କହିଲେ, ଆପଣ ଆମ ଘରେ ରହିବାଟା ଅସୁନ୍ଦର ହେବ, ଆପଣଙ୍କ ଲୋକେ ଖରାପ ଭାବିବେ, ଆପଣଙ୍କୁ ସନ୍ଦେହ କରିବେ, ଆମ ଲୋକେ ଓ ସରକାର ମୋତେ ସନ୍ଦେହ କରିବେ, ଆପଣ ମେଲଣ ପଡ଼ିଆ ଘରକୁ ଉଠିଯାନ୍ତୁ, ମୁଁ ସବୁ ବ୍ୟବସ୍ଥା କରିଦେଉଛି ।

ମେଲଣ ପଡ଼ିଆ ଘରକୁ ଦାଶେ ଆପଣେ ଉଠିଗଲେ । ସଭା ହେଲା । ରଘୁଅଜା ଥାନାକୁ ଚୌକିଆ ହାତରେ ଖବର ଦିଆଇଲେ, ସେତେବେଳକୁ ଥାନାରେ ବଡ଼ ଗୋରା ପଲ୍‌ଟନ ଆସିଥାଆନ୍ତି, ଆଗରୁ ଖବର ପାଇଥାଆନ୍ତି । ସଭାରେ ଗୋରା ପୋଲିସ୍ ଥାଆନ୍ତି, ଗୋରା ହାକିମ ଥାଆନ୍ତି । ରଘୁଅଜା ବି ସଭାରେ ହାଜର ଥିଲେ ତାଙ୍କ ଚୌକିଆ ବାହିନୀ ସାଙ୍ଗେ, ହେଲେ ପୁଲିସ୍‌ଙ୍କଠୁ ଦୂରରେ, ମେଳିଆଙ୍କଠୁ ଦୂରରେ । କଥା କଟାକଟି ହେଲା, ମେଳିଆଙ୍କ ଭିତରେ ଓ ପୁଲିସ୍ ହାକିମ ଭିତରେ; ପୁଲିସ୍ କହିଲେ ସଭା ପାଇଁ ଅନୁମତି ନାହିଁ, ସଭା ଭାଙ୍ଗିବାକୁ ପଡ଼ିବ, ଦାଶେ ଆପଣେଙ୍କୁ ଆଗେ ବାନ୍ଧି

ଚଳେଇ ଚଳେଇ ନେଇଗଲେ । ସେଇଠୁ ଲୋକେ ଆଉରି ତାଡ଼ିଲେ, ପୁଲିସ୍ ଆଉରି ତାଡ଼ିଲେ, ଟେକାପଥର ପଡ଼ିଲା, ପୁଲିସ୍ ଶେଷକୁ ଗୁଳି ଫୁଟେଇଲେ । ସେମିତି ସ୍ଥାଣୁ ହୋଇ ଠିଆହୋଇଥିଲେ ରଘୁଅଜା ଓ ତାଙ୍କ ନେଳିଆ ପୋଷାକ ପିନ୍ଧା ଟୋକିଏ । ଦଶଜଣ ମରିଗଲେ ସେଇଠି, ବାରଜଣ ଗଲେ ବନ୍ଧା ହୋଇ ହାସ୍ପାତାଳକୁ, ସେଥିରୁ ମଲେ ସାତଜଣ । ଆଉ ଘାଇଲା ହୋଇ ଦଉଡ଼ି ପଳେଇଲେ ନଅଜଣ, ଫଉଜଦାରୀ କେଶ୍ ହବ ବୋଲି ଲୁଚିଲେ. ସେଥିରୁ ମଲେ ପାଞ୍ଚଜଣ, ସେ ପାଞ୍ଚଜଣଙ୍କ ନାଁ ଆପଣ ଜାଣିବେ ନାହିଁ । ତାଙ୍କ ହିସାବ କୋଉଠି ପାଇବେ ନାହିଁ । ସମୁଦାୟ ମଲେ ବାଇଶ, ହେଲେ ସରକାରୀ ହିସାବରେ ସତର । ରଘୁଅଜା ସବୁ ହିସାବ ମନରେ ରଖିଥିଲେ, କିଏ ମଲା, କିଏ ନେତାଗିରି କରୁଥିଲା, ଆଗରୁ ଦଉଡ଼ି ପଳେଇଲା, ଏତେ ବଡ଼ ହିସାବ ତାଙ୍କ ହୃଦୟ ଭିତରେ ରହିଲା ନାହିଁ । ରଘୁଅଜାଙ୍କୁ ସିଏ ଦେଖିଲା କହିଲା, ହୋଇ ଭାରି ଅନ୍ୟାୟ ହେଲା । ଏତେଗୁଡ଼ାଏ ଲୋକ ମଲେ, ପୁଲିସି ଡକେଇ ଆଣିବା ଠିକ୍ ହେଲା ନାହିଁ । ରଘୁଅଜା ଯେତେ କହିଲେ, ହେଃ ମୁଁ କିଏ, ତୋର ପୁଲିସି କିଏ, ମୁଁ କ'ଣ ସତରେ ଏତେ ପାରଙ୍ଗମ, ସତେ ଅବା ପୁଲିସି ଜାଣି ନଥିବ, ଗାନ୍ଧିଜୀ ଆସିବେ ଆସିବେ ବୋଲି ଦାଣ୍ଡରେ ଘାଟରେ ହୁରି ପଡ଼ିଥିଲା ସିନା, ଗାନ୍ଧିଜୀ ଆସିବେ ଆସିବେ ବୋଲି ଗଳିପଥ, ନଈନାଳ, ହୁଡ଼ାବନ୍ଧ ସମସ୍ତେ ଜାଣିପାରିଥିଲେ ସିନା, ଆଉ ସରକାର ଘର କ'ଣ ଜାଣି ନଥିବ ଯେ ! ହେଲେ ବି ଏସବୁ କ'ଣ ରଘୁଅଜାଙ୍କ ଧମନୀରେ ପଶି ଦୁହିଁ ଦେଲା ଓ ହୃତ୍‌ପିଣ୍ଡରେ ପଶି ଫଟେଇ ଦେଲା, ସେ ମରିଗଲେ, ଛତିଶ ବର୍ଷ ବୟସରେ; ଛୁଆଅଛି ସେତେବେଳକୁ ସତର ବର୍ଷର ଯୁବତୀ, ସେ ବିଧବା ହୋଇଗଲା । ସେ ଧଳା ଧୋତି ପିନ୍ଧିଲା, ରୁକ୍ଷ ହସିଲା, ନିଜ ପୁରୁଣା ମୂଲିଆ ଓ ଅଣ୍ଟିଆ ବଳଦ ସମେତ ସବୁ ପୁରୁଷଙ୍କୁ ଅଛୁଆଁ ମଣି ଦୂରରେ ରଖିଲା । କେହିବି ଦାଣ୍ଡ ଦୁଆରକୁ ଆସିଲେ, ସେ କବାଟ ଖୋଲିବା ପୂର୍ବରୁ ଆଉ ଲୋକଟି କବାଟ ଛୁଉଁଚି କି ନାହିଁ ଦେଖି ତା'ପରେ କବାଟ ଖୋଲିଲା ଓ ହଠାତ୍ ସତୁରି ବର୍ଷର ବୁଢ଼ୀ ପାଲଟିଗଲା ।

ଏ ଘଟଣାର ପ୍ରାୟ ଚାଳିଶ ବର୍ଷପରେ, ପୂର୍ବ କଥିତମତେ, ଯେତେବେଳେ ମହାନ୍ ସ୍ୱାଧୀନତା ସଂଗ୍ରାମ ନାଟକ ଅଭିନୀତ ହେଲା, ସେତିକିବେଳେ ଆମ ମାମୁଁ ଘର ଗାଁରେ ବି ଏ ନାଟକର ଆୟୋଜନ କରାଗଲା । ପ୍ରତିବର୍ଷ ଗୁଳିକାଣ୍ଡର ବାର୍ଷିକୋତ୍ସବ ପାଳନ କରାଗଲା, ବଡ଼ ସଭା ହେଲା, ପୁଟେଷ୍ଟ ପାଞ୍ଚଜଣ ମନ୍ତ୍ରୀ ଆସିଲେ ଓ ପ୍ରତିବର୍ଷ ରାଜ୍ୟପାଳ ବା ମୁଖ୍ୟମନ୍ତ୍ରୀ ଦି'ଜଣଙ୍କ ଭିତରୁ ଅନ୍ତତଃ ଜଣେ ଆସିଲେ । ଆମ ଅଞ୍ଚଳର ଜଣେ ଇତିହାସ ଅଧ୍ୟାପକ, ଯେ ବହୁତ ଦୂରରେ ଚାକିରି କରୁଥିଲେ, ସେ ଏ ସଭାରେ ପ୍ରତିବର୍ଷ ବକ୍ତା ରୂପେ ଯୋଗଦେଇ ବକ୍ତୃତା ଦେଲେ, ପ୍ରସିଦ୍ଧ ହେଲେ ଓ ପାଖକୁ ବଦଳି ହୋଇ ଆସିବାକୁ ସମର୍ଥ ହେଲେ । ସେ ଯାହାକୁ ଦେଖିଲେ ତାକୁ ଅପଣାର

କଣେଇନେଉଥିଲେ, "ଆଉ ! ତୋ ବାପା ! ଭଲ ଅଛନ୍ତି ?" ବୋଲି ପଚାରୁଥିଲେ (ଯଦିଓ ବାପା କୋଉ ଦିନୁ ମରିଯାଇଥିବେ), ସେ ଏକ ଗବେଷଣା କରି ରଘୁଅଜାଙ୍କୁ ଏ ସହରେ କବିଙ୍କର ମୃତ୍ୟୁ ପାଇଁ ଦାୟୀ କଲେ (ବାକି ପାଞ୍ଚ କବିଙ୍କ ହିସାବ ଦେଇ ପାରି ନଥିଲେ) ଓ ଏପରି ଗବେଷଣା କରି ଅଚିରେ ଡକ୍ଟରେଟ୍ ଓ ପରେ ପରେ ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରଫେସର ହୋଇଥିଲେ । ଆମ ମାମୁଁ ଘର ଗାଁ ପ୍ରସିଦ୍ଧ ହେଲା, ଗୁଳିକାଣ୍ଡର ବାର୍ଷିକୋତ୍ସବ ପାଳନ ସମୟରେ ଖବର କାଗଜରେ ଆମ ମାମୁଁଘର ଗାଁକୁ ଧର୍ମତୀର୍ଥ, ଜାତିପୀଠ, ସଂଗ୍ରାମପୀଠ ଆଦି ବିଶେଷଣରେ ଭୂଷିତ କରି ସମ୍ମାନିତ କରାଗଲା । ତେବେ କଥାଟିକୁ ଅତିରଞ୍ଜିତ ନକରି କୁହାଯାଉ, ଏବେବି ମାମୁଁ ଘର ଗାଁରେ ଇଲେକ୍ଟ୍ରିସିଟି ନାହିଁ । ଗାଁ ରାସ୍ତା ବର୍ଷା ଦିନେ କଟିଯାଏ କାରଣ ବାଟରେ ଗୋଟେ ନଈ ପଡ଼େ, ସେ ନଈରେ ପୋଲ ନାହିଁ । ଗାଁର ପଚାଶ ବର୍ଷର ପୁରୁଣା ଫିଡ଼ର ସ୍କୁଲର ପକ୍କା ଛାତ ଭାଙ୍ଗିଯିବାରୁ ପିଲାଏ ଗଛମୂଳେ ବସି ପଢ଼ନ୍ତି । ଯଦିଓ ଫିଡ଼ର ସ୍କୁଲର ନାଁ ବଦଳେଇ ପ୍ରାଇମେରୀ ସ୍କୁଲ କରାଯାଇଛି, ସ୍କୁଲ ପାଇଁ ଘର ତିଆରି ହୋଇନାହିଁ । ଗାଁର ପ୍ରାଇଭେଟ୍ ହାଇସ୍କୁଲର ଶିକ୍ଷକମାନେ ଅଧାମାସ ଦରମା ପାଆନ୍ତି ନାହିଁ । ହରିଜନ ସାହିର ଲୋକେ ଅଧାଦିନ ଚୋରି କରି ଚଳନ୍ତି । ଜମିଦାର ସାହିର ଲୋକେ ଅଧାଦିନ ଉପାସ ରହନ୍ତି, ସେଠି ସମସ୍ତଙ୍କ ଘର ଭାଙ୍ଗିଗଲାଣି । ସବୁଠୁ ବଡ଼ ଜମିଦାରଙ୍କ ବଡ଼ପୁଅ ଏବେ ଜମିବାଡ଼ି ବିକାସାରି ଜଣେ ମାରୁଆଡ଼ି ପାଖେ ଗୁମାସ୍ତା କାମ କରୁଛି, ଗାଁର ସବୁଠୁ ସାନ ଜମିଦାର ସାନପୁଅ ଏବେ ସହରରେ ଅଟୋରିକ୍ସା ଟାଣୁଚି । ପ୍ରକାଣ୍ଡ ହ୍ରଦ ଆକାରର ପୋଖରୀ ସବୁ ଦଳରେ ପୋତି ଗଲାଣି । ତଥାପି ପ୍ରତିବର୍ଷ ଗାଁରେ ସଭା ହୁଏ, ସଭାମଣ୍ଡପ ହୁଏ, ଆଲୋକିତ ହୁଏ, ଦୁଇକିଲୋମିଟର ଦୂରରୁ ଟଣାହୋଇ ଇଲେକ୍ଟ୍ରିସିଟି ଆସେ, ବଡ଼ ତୋରଣ ସଜାହୁଏ, ମାଇକ୍ ଏତେ ଜୋର୍‌ରେ ବାଜେ ଯେ ପଚାଶଖଣ୍ଡ ଗାଁକୁ ଶୁଭେ । ଗୁଳିକାଣ୍ଡ ବେଳେ ଦୌଡ଼ି ପଳେଇଯାଇଥିବା ଜଣେ ବୀର ସ୍ୱା'ଭିତରେ ବିପ୍ଳବୀ ବୋଲି ପ୍ରସିଦ୍ଧ ହୋଇଯାଇଥିଲେ ଓ ପ୍ରତିବର୍ଷ ତାଙ୍କ ନାଁ ଖବର କାଗଜରେ ବାହାରୁଥିଲା । ଆମ ଇତିହାସ ସାର୍‌ଙ୍କ ବହିରେ ବି ତାଙ୍କ ନାଁ ଥିଲା । ତାଙ୍କୁ ପ୍ରତିବର୍ଷ ଗୋଟେ ତାମ୍ରପତ୍ର, କି ମାନପତ୍ର ଓ ଶାଲ୍‌ଫାଲ୍ ମିଳୁଥିଲା ।

ଏମିତି ଗୋଟେ ବର୍ଷ ଗୁଳିକାଣ୍ଡର ବାର୍ଷିକୋତ୍ସବ ପାଳନ ପାଇଁ ପ୍ରସ୍ତୁତି ଚାଲିଥିବାବେଳେ ଦିନେ ବୁଢ଼ୀଆଈ ପାଖେ ଜଣେ ଉଦ୍ୟୋକ୍ତା ପହଞ୍ଚିଲା । ଉଦ୍ୟୋକ୍ତାଟି ଗାଁର ତଳସାହିର, ତଥାପି ବୁଢ଼ୀଆଈ ତାକୁ ଘରକୁ ଡାକିଲେ ନାହିଁ । ଉଦ୍ୟୋକ୍ତାଟି ସେଇଠି କହିଲା ଯେ ବୁଢ଼ୀମାମାନେ, ବୁଢ଼ୀଆଈଙ୍କୁ ଏଥର ଡାକରା ଆସିଚି ଖୋଦ୍ ସରକାରଙ୍କ ପାଖରୁ, ମନ୍ତ୍ରୀମାନେ ଆସିଚନ୍ତି; ନିଜେ ମୁଖ୍ୟମନ୍ତ୍ରୀ ଓ ତିନି ଜଣ ମନ୍ତ୍ରୀ ଖବର ଦେଇଚନ୍ତି । ବୁଢ଼ୀଆଈ 'ତୋ ମନ୍ତ୍ରୀ ତୋପାଖେ ରଖିଥା' କହି ଚାଲିଯାଉଥିଲା ।

ଉଦ୍‌ଦ୍ୟୋକ୍ତାଟି କହିଲା ଯେ, ଯଦି ଲୁଆଅଣ୍ଡି ନଆସିବ, ତେବେ ତା' ଘରେ ସବୁ ସଭାବାଲାଏ ପହଞ୍ଚିବେ ଓ ଏ କଥାରେ ଲୁଆଅଣ୍ଡି ସମ୍ଭବତଃ ସାମାନ୍ୟ ଡରିଗଲା । ସତକୁସତ ସଭା ଦିନ ରାତିଶ ଗୁଳିଶ ସହିତ ଉଦ୍‌ଦ୍ୟୋକ୍ତା ଆସି ପାଟିତୁଣ୍ଡ କଲେ ଓ ଲୁଆଅଣ୍ଡି ବାଧ୍ୟ ହୋଇ ଘରୁ ବାହାରିଲା । ଲୁଆଅଣ୍ଡି ବହୁତ ଦିନ ହେଲା ଘରୁ ବାହାରକୁ ବାହାରି ନଥିଲା, ଏପରିକି ବାହାରକୁ ପିନ୍ଧିକି ଯିବାପରି ଲୁଗାଖଣ୍ଡେ ତା'ର ନଥିଲା; ଭାଗ୍ୟକୁ ଯେ ବଢ଼ିବା ଥିଲା, ତେଣୁ ଧୋତି ଖଣ୍ଡେ ମାଗିନେଲା, ହେଲେ ଧୋତିଟି ସତଲୋଥିଲା, ଲୁଆଅଣ୍ଡି ଅନ୍ଧାରରେ ଅନ୍ଧାରରେ ସଭା ସ୍ଥଳରେ ପହଞ୍ଚିଲା ଓ ଅନ୍ଧାରରେ ମାଇକନାଙ୍କ ଶହରେ ବସିପଡ଼ିଲା ।

ସଭାକାର୍ଯ୍ୟ ସବୁଥର ପରି ବିଳମ୍ବରେ ଆରମ୍ଭ ହେଲା, କାରଣ ମନ୍ତ୍ରୀମାନେ ଡେରିରେ ଆସିଲେ । ବିପ୍ଳବୀମାନଙ୍କ ପ୍ରଶଂସା କରାଗଲା, ବ୍ରିଟିଶ୍ ସରକାରଙ୍କ ଅତ୍ୟାଚାରକୁ ନିନ୍ଦା କରାଗଲା, କିନ୍ତୁ ଭୂତପୂର୍ବ ଜମିଦାରମାନଙ୍କ ଅଯୋଗ୍ୟ ଉତ୍ତରାଧିକାରୀ-ମାନେ ସେହି ସ୍ଥଳରେ ଉପସ୍ଥିତ ଥିଲେ । ତେଣୁ ଜମିଦାରଙ୍କ ଅତ୍ୟାଚାର କଥା କହିଲା ବେଳେ କେହି ଜମିଦାରଙ୍କ ନାଁ ଧରିଲେ ନାହିଁ । ଅପର ପକ୍ଷରେ କେହି ବକ୍ତା ବ୍ରିଟିଶ ହାକିମ କ ପୁଲିସ୍‌ଙ୍କ ନାଁ ଜାଣିନଥିଲେ, କିନ୍ତୁ ରଘୁଅଜାଙ୍କ ନାଁ ସମସ୍ତେ ଜାଣିଥିଲେ, ରଘୁଅଜାଙ୍କ ସଭାରେ ସବୁଥର ପରି ନରହନ୍ତା, ଅତ୍ୟାଚାରୀ, ରକ୍ତପିପାସୁ, ଦେଶଦ୍ରୋହୀ, ଅର୍ଥପିପାସୁ, ଶୋଷକ ଆଦି କଡ଼ାକଡ଼ା ଓ ଉତ୍ତେଜକ ଶବ୍ଦ ଲଗେଇ ଗାଳି ଦିଆଗଲା । ସତରଜଣଙ୍କ ମୃତ୍ୟୁପାଇଁ ତାଙ୍କୁ ଦାୟୀ କରାଗଲା ।

ସେ ବର୍ଷ ଗୁଳିକାଣ୍ଡ ହୋଇଥିବା ଜାଗାରେ ସ୍ମୃତିଟିଏ ତିଆରି ହେଲା । ଗୁଳିକାଣ୍ଡରେ ପ୍ରାଣ ହରାଇଥିବା ଶହୀଦମାନଙ୍କ ନାଁରେ ଗୋଟିଏ ଗୋଟିଏ କରି କାଳ୍ପନିକ ସମାଧି ଗଢ଼ାଗଲା ଓ ସେଥିରେ ଝିକିଝିକି ଅକ୍ଷରରେ ଶହୀଦମାନଙ୍କ ନାଁ ଲେଖାଗଲା । ସେ ସ୍ଥାନ ଚାରିପଟେ ଭଲକରି ପାଚେରି ହେଲା ଓ ଏ କାମରୁ ଯାବତୀୟ ଲୋକେ ଲାଭବାନ୍ ହେଲେ । ପାଚେରି ବାହାରେ ଖୁବ୍ ବଡ଼ ବଡ଼ ଅକ୍ଷରରେ ମୁଖ୍ୟମନ୍ତ୍ରୀଙ୍କ ନାଁ ଲେଖାଗଲା । କାରଣ ମୁଖ୍ୟମନ୍ତ୍ରୀ ଏ ସ୍ଥାନକୁ ଉଦ୍‌ଘାଟନ କରିଥିଲେ; ଯଦିଓ ଗାଁ ଗଣ୍ଡାରୁ ଆସୁଥିବା କେହି କେହି ଲୋକ ଭାବୁଥିଲେ ଯେ ଏଇଠି ମୁଖ୍ୟମନ୍ତ୍ରୀଙ୍କର ସମାଧି ସ୍ଥାପିତ ହୋଇଛି । ଅବଶ୍ୟ ଅଧିକାଂଶ ଲୋକ ଆଶ୍ଚର୍ଯ୍ୟ ହେଉନଥିଲେ କାରଣ ସମ୍ପୃକ୍ତ ଲୋକଟି ବଞ୍ଚିଛି ବୋଲି ସେମାନେ ଜାଣିନଥିଲେ, ହେଲେ ଜାଣିବା ଶୁଣିବା ଲୋକେ ଏ ନାମଫଳକ ଦେଖି ଚମକିପଡ଼ୁଥିଲେ ।

ତେବେ ଲୁଆଅଣ୍ଡିର କଥା କହୁଛି । ସେଦିନ ରାତିରେ ପୂରା ସଭା ସେ ବସିନଥିଲା । ଛଅ ସାତଜଣ ଲୋକ ରଘୁଅଜାଙ୍କୁ ଅସମ୍ମାନସୂଚକ ଗାଳିଦେଇ

ହାରିବା ବେଳକୁ ତାକୁ କାନ୍ଦକାନ୍ଦ, ଅଣନିଶ୍ୱାସୀ, ବାନ୍ତବାନ୍ତ ଓ ଝୋଟିଆ ଲାଗିଲା ଓ ସେ ସବୁଥର ପରି ରଘୁଅଜାଙ୍କୁ ଗାଳିଦେଲା ଓ କହିଲା, ତମେ ତ ବଡ଼ ଆରାମରେ ଯାଇକି ଅଛ ସେଠି, ମୋତେ ଏଠି ହନ୍ତସନ୍ତ କରିବାକୁ ଛାଡ଼ି ଦେଇଚ ? ଅନ୍ଧାରରେ ସେ ଘରକୁ ଫେରିଆସିଲା । ସେଇ ରାତିରେ ସେ ବାଛଣା ଧରିଲା, ଖାଇବା ପିଇବା ଛାଡ଼ିଦେଲା ଓ ପରବର୍ଷ ରଘୁଅଜାକୁ ପୁନଷ୍ଟ ଗୁଳିକାଣ୍ଡର ବାର୍ଷିକୋତ୍ସବରେ ଗାଳିହେବାର ବହୁ ପୂର୍ବରୁ ମରିଗଲା । ତା' ଘର ଡିହ ଭାଙ୍ଗିଗଲା; ତା' ଘରୁ ଫୋଟୋଟିକୁ ଆଣି ମୁଁ ଆମ ଘରେ ଟାଙ୍ଗିଦେଲି । ମୁଁ ପ୍ରାଇଭେଟ୍ ସ୍କୁଲରେ ଚାକିରି କରେ, ପ୍ରାଇଭେଟ୍ ସ୍କୁଲରେ କଦବା କ୍ୱଚିତ୍ ବଦଳି ହୁଏ; ଯୋଉଦିନ ମୁଁ ଏ ଫୋଟୋ ଆଣି ଆମ ଘରେ ଟାଙ୍ଗିଲି ଓ ଗାଁର ସମସ୍ତଙ୍କୁ ଡାକି ରଘୁଅଜା ସପକ୍ଷରେ ଦଣ୍ଡାଏ ବକ୍ତୃତା ଦେଲି, ତା'ର ପନ୍ଦର ଦିନ ପରେ ରାଜ୍ୟର ଆର ପ୍ରାନ୍ତକୁ ମୋର ବଦଳି ହୋଇଗଲା ।



# ଏକ ନିରର୍ଥକ ଯୌବନ ମିଳାଇଯାଏ ଅବାନ୍ତର ବାର୍ଦ୍ଧକ୍ୟରେ

'ବେଳେ ବେଳେ ଡାକି ଡାକି କାହା ସ୍ୱର ସ୍ତବ୍ଧ ସଙ୍କୁଚିତ କରିଦିଏ; ଅଥଚ ବେଳେ ବେଳେ ଯେତେ ଡାକିଲେ ବି ଜମାରୁ ଶୁଭେ ନାହିଁ ?' ବାଲ୍‌ଟି ପରି ଗହ୍ୱର ବେଢ଼ ରେଖାର ଭିତରକୁ ଚାଲିପଡ଼ି, ଟୁରିଷ୍ଟ ବଙ୍ଗଳାର ବାଲକୋନିରୁ ଚିଲିକା ଆଡ଼କୁ ମୁଁ ଅନେଇ ବସିଛି । ଲଞ୍ଚ୍‌ଟିଏ ଲଙ୍ଗର୍ ପକେଇଛି ଓ ଲଙ୍ଗର୍ ଚାରିପଟେ ଧୀରେ ଧୀରେ ଲଞ୍ଚ୍‌ଟି ଘୂରିଯାଉଛି; କେତେବେଳେ ମଙ୍ଗପଟ ଦିଶୁଛି, କେତେବେଳେ ଲମ୍ବାପଟ । ପାରାପେଟ୍ ଉପରେ ଗୋଡ଼ ଲମ୍ବେଇ ମୋ ସ୍ୱାମୀ କ'ଣ ଗୋଟେ ମୋଟା ବହି ପଢ଼ୁଛନ୍ତି । 'ବହି ଯାହା ପଢ଼ିବା କଥା, ଏତେବାଟ ଆସି, ଏଠି ଟୁରିଷ୍ଟ ବଙ୍ଗଳାରେ ଏତେ ପଇସା ଦେଇ ରହିବା କ'ଣ ଦରକାର ?' ମୁଁ ସ୍ୱାମୀଙ୍କୁ କହିଲି ।

ସ୍ୱାମୀ ମୁହଁଟେକି ଦେଖୁଛନ୍ତି । ହସି ଦଉଛନ୍ତି ସତେକି ମୁଁ ଟିକି ପିଲଟେ, ମଝିରେ ମଝିରେ ଇମିତି ବାତୁଳତା କରିବା କଥା । ପୁଣି ବହି ଭିତରକୁ ମୁହଁଗୁଞ୍ଜି ଦଉଛନ୍ତି । ଦୂରରେ କେଉଁଠି ପାଖେ ଖୁଣ୍ଟଟିଏ, ବୋଧେ କୋଉ ଡଙ୍ଗା ବନ୍ଧାହବାପାଇଁ । ଖୁଣ୍ଟର ଲମ୍ବା ଅପରାହ୍ଣ ଛାଇ ଚିଲିକା ପାଣିରେ ଦୋଳି ଖେଳୁଛି । 'କାହା ସ୍ୱର ବେଳେ ବେଳେ ଶୁଭେ', ମୁଁ ଭାବୁଛି, ପୁଣି କହୁଛି, 'ଚୁପ୍ ଭଳି ଗୋଟେ ମନେ ମନେ ଦାର୍ଶନିକ ହେଇଗଲିଣି ।' ତଳେ ପର୍ଯ୍ୟଟକ ଓ ଚଢ଼େଇମାନଙ୍କ କିଚିରିମିଚିରି । 'କେତେ ଗୋଳମାଳିଆ ହେଇ ଗଲାଣି ଏ ଜାଗାଟା', ମୁଁ ସ୍ୱାମୀଙ୍କୁ କହୁଛି, 'ଗଲଥର ଯେବେ ଆସିଥିଲେ କେତେ ଚୁପ୍‌ଚୁପ୍ ଥିଲା ଏ ଜାଗାଟା ?'

ସ୍ୱାମୀ ପୁଣିଥରେ ହସି ଦଉଛନ୍ତି, 'ଢନବର୍ଷ ହେଇଗଲାଣି ନା' ସ୍ୱାମୀ ପୁଣିଥରେ ହେଇ ଝର ଗୋଟେ ପ୍ରୌଢ଼ବୟସ୍କ ଲୋକର ହସ ହସିଲେ ଓ ପାରାପେଟ ତଳକୁ ମୁହଁ ନୁଆଁଇ ମୋ ହାତ ଟାଣିନେଇ ଗୋଲ କଲେ ସତେକି ସମାଜଠ

ଏଥିପାଇଁ ସେ ଯଥେଷ୍ଟ ଲାଇସେନ୍ସ ପାଇନାହାନ୍ତି ଓ ପୁଣିଥରେ ନିଜ ବହିକୁ ଫେରିଯାଉଛନ୍ତି ।

ଷ୍ଟିମର୍ ପାଣିରେ ଚାଲିଯାଉଛି । ଏଇ ଧାଡ଼ିଟା ମୁଁ ବାରମ୍ବାର ଭାବୁଛି । 'କ'ଣ ଭାବୁଛ', ସ୍ୱାମୀ ପଚାରୁଛନ୍ତି । ମୁଁ ମୁଣ୍ଡ ହଲେଇ ଜୋର୍‌ରେ, ନାହିଁ କରୁଛି । 'ଭୋକ ହେଲାଣି', ସ୍ୱାମୀ ପଚାରୁଛନ୍ତି । 'ଭୋକ ନା ଶୋଷ ? ବହୁତ ବିଅର୍ ପିଇଛ ତମେ । ଝିଅ ବି ବଢ଼ିଲାଣି । ବାପା ପରି' । ଜେଟିରେ ସାନ ଡଙ୍ଗାଟିଏ ଲାଗିଛି । ଲଙ୍ଗରରେ ଲଟକିଥିବା ଲୋକ ଭାବୁଛି, ଯଦି କା ଶକ୍ତି ଥିଲେ କୁଆଡ଼େ ପଳେଇ ଆନ୍ତା । ଡଙ୍ଗାରୁ ଲୋକେ ଓହ୍ଲାଇ ପଡ଼ୁଛନ୍ତି ଓ ନୀରବ ହୋଇଯାଉଛନ୍ତି, ଯେତେ ଜଣ ସବୁ କଟେରମିଟରେ କିଏ ଝରକା ଝରକା ନେଇ ଯାଉଛି । ବଇଁଶୀର ସ୍ୱନ ଭାସିଆସୁଛି । ମୁଁ ଷ୍ଟ୍ରୀଟ ବୋଲି ଭାବିଥିବା ଜିନିଷଟି ପ୍ରକୃତରେ ବଇଁଶୀ ବଜଉଥିବା ଲୋକଟିଏ । 'ସେ ବଇଁଶୀ ବଜଉଛି ଓ ତା' ଚାରିପଟେ ଟୁରିଷ୍ଟ୍‌ମାନେ ଘେରିଗଲେଣି । ସେମାନେ ସାଙ୍ଗ ହୋଇ ଏଇଆଡ଼କୁ ଆସୁଛନ୍ତି । ସମସ୍ତେ ଲନ୍‌ରେ ପହଞ୍ଚୁଛନ୍ତି ଓ ବଡ଼ ପାଟିରେ ଓ୍ୱେଟର୍ ଓ୍ୱେଟର୍ ପାଟି କରୁଛନ୍ତି । ବଂଶୀ ବାଦକଟିକୁ ମୁଁ ଦେଖିପାରୁଛି ଲୋକଗହଳି ଭିତରୁ । ସେ ବୋଧେ ଏବେ ବାଁ ହାତ ଭୂଇଁରେ ଭରାଦେଇ କଡ଼େଇ ଶୋଇଛି ଓ ଗୋଟେ ହାତରେ ବଇଁଶୀ ବଜଉଛି; କାରଣ ଜଣେ ପାଟି କରୁଛି, ଗୋଟେ ହାତରେ ବଇଁଶୀ ବଜେଇବା ଲୋକ ମୁଁ ଆଗରୁ ଦେଖି ନାହିଁ । ଏବେ ଆଉ ବଇଁଶୀ ଶୁଭୁନାହିଁ । ହୋ ହା, ବିଚିତ୍ରବର୍ଣ୍ଣର ଓ ଏକାଧିକ ଭାଷାର । ଯେତେ ଯେମିତି ଘାସର ସତାଭୂ ଧ୍ୱଂସବିଧ୍ୱଂସ କରିବାକୁ ଏତେ ଟୁରିଷ୍ଟ ଯଥେଷ୍ଟ ନୁହନ୍ତି, ସେମିତି ତାରବାଡ଼ ଆରପଟେ ଗାଈଟିଏ ଚରୁଛି ଓ ମଝିରେ ମଝିରେ ଭିତରକୁ ଲୋଲୁପ ଦୃଷ୍ଟି ପକଉଛି ।

ମୁଁ ବିରକ୍ତ ହୋଇ ସମବେଦନା ପାଇଁ ସ୍ୱାମୀଙ୍କ ଆଡ଼କୁ ଅନଉଛି । ସ୍ୱାମୀଙ୍କୁ ଦୁଇ ମିନିଟ୍ କ୍ରମାଗତ ଅନେଇଲା ପରେ ସ୍ୱାମୀ ହଠାତ୍ ସଚେତନ, ମୁହଁ ଟେକି ହସୁଛନ୍ତି, ତଳକୁ ଅନେଇ କହୁଛନ୍ତି, 'ବାଃ, ଭାରି ଖୁସି ମୁଡ୍‌ରେ ଅଛନ୍ତି ତ ! ମୁଁ ଟିକେ ଜେଟି ଆଡ଼କୁ ଯାଉଛି । 'ଯାଅ, କ'ଣ ଗୋଟେ ଦାର୍ଶନିକ କଥା ଭାବ—ହେଲେ ସେଇ ବଂଶୀବାଦକର ପ୍ରେମରେ ପଡ଼ିବନି । ଜାଣିଚ ତ କୃଷ୍ଣଙ୍କଠୁ ଆରମ୍ଭ କରି ସବୁ ବଂଶୀବାଦକ ଦଗାଦିଆ,' କହି ସ୍ୱାମୀ ହୋ' ହୋ' ହସୁଛନ୍ତି ।

ବଂଶୀ ପୁଣି ଆରମ୍ଭ ହୋଇଯାଇଛି । ସ୍ୱରଟି ଚିହ୍ନା ଚିହ୍ନା ଲାଗୁଛି । କ'ଣ ଗୋଟେ ଚିହ୍ନାଜଣା ଧ୍ୱନି, କୋଉ ଜଣାଶୁଣା ଓଡ଼ିଆ ପୁରୁଣା ଗୀତ, ଚମ୍ପୂ, ସେନଶୀର ସ୍ୱନ ? ନାଃ କିମାରୁ ମନେପଡ଼ୁନି । ମୁଁ ଲନ୍ ପାଖେ ପହଞ୍ଚିଲାବେଳକୁ ବଂଶୀସ୍ୱନ ନୀରବ, କରତାଳି ଓ ହୋ' ହା' । ଲନ୍ ପାରହୋଇ ତଳକୁ ମୁହଁପୋତି

ମୁଁ କେତି ଅଡ଼କୁ ଯାଉଛି । ତାଙ୍କ ଅଡ଼କୁ ଅନେକନ ଯାଏଁ ସେମାନଙ୍କର ଖୁସି ମୋତେ ଅଛେ, ଏକଦମ୍ ଅଛେ—ଯେମିତ ଚଳକାର ଢେଉ ଥାନ ଥାନ ଅଛେ ଅଛେ—ଛୁଇଁ ଦେଇଯାଉଚ, ଛୁଉଁନାହିଁ । ବାଃ ଖାଲି ଖୁସିରେ ସମସ୍ତେ ଅଛନ୍ତି ତ ! ମୁଁ କିନ୍ତୁ ଦବୁରେଲେ ଟୁରିଷ୍ଟ ଜାଗାକୁ ଆସିଲେ ଗୋଟେ କ'ଣ—ମୁଁ ଜାଣେ ନାହିଁ; କିନ୍ତୁ କ'ଣ ଗୋଟେ ପାଇଯିବ ଏଇ ଆଶାରେ କାହିଁକି ଅସ୍ତବ୍ୟସ୍ତ ହୋଇଯାଏ ? କେତିର ଢ' କାନ୍ଥରେ ଗୃହେଟି ଅଦ୍ଭୁତ ଦମ୍ପତି—ହରମରେ ପାଉଣ୍ଡଲୀ ପର୍ଯ୍ୟନ୍ତ କୋଶ-ହୋଇଯାଉଥିବା ମୋର ଦୁରବସ୍ଥା ପ୍ରତି ନିସ୍ପୃହ ଉଦାସୀନ ହୋଇ ଆଲିଙ୍ଗନବଦ୍ଧ ।

ତାଙ୍କୁ ଦେଖି ହଠାତ୍ ଥାପ ଦେଖିଲି ପରି ତରତର ହୋଇ ବଙ୍ଗଳା ଅଡ଼କୁ ମୁଁ ଫେରି ଆସୁଚି । ଲନ୍‌କୁ ଘୁଞ୍ଚ ଏମୁଣ୍ଡ ସେମୁଣ୍ଡ ଗାସିଗଲଣି । ଲନ୍‌ରେ ପ୍ରାୟଶଃ ବୃତ୍ତାକାରରେ, ମାନେ ଗୋଟେ ଗ୍ରେଟ ପିଲର ହସ୍ତାଙ୍କିତ ବୃତ୍ତ—ବସିଥିବା ଲୋକେ ଖଣ୍ଡେ କାଗଜ ଦେଖିବା ପାଇଁ ଛଡ଼ାଛଡ଼ି ହଉଚନ୍ତି ଏବଂ କାଗଜକୁ ଅନେଇସାରି, ସେଇ ଦଳରେ ବସିଥିବା ଜଣେ ଅଧାଚନ୍ଦା, ଥୋଡ଼ପାଖେ ଟିକେ ଅଧାପାଚିଲା ମଙ୍ଗୋଲିଆନ୍ ଡାଢ଼ିବାଲା ଲୋକକୁ ଅନେଇ ଦେଇ ହସୁଚନ୍ତି ଓ 'ବାଃ ବାଃ, କି ଅବିକଳ ହୋଇଚି' ବୋଲି ପାଟି କରୁଚନ୍ତି । ଲନ୍‌ର ଅନ୍ୟାନ୍ୟ ଅଞ୍ଚଳରେ ବସିଥିବା ଲୋକେ ଏବେ ଏଇଠିକି ଉଠି ଆସୁଚନ୍ତି ଓ ଗୃଶପଟେ ଘେରିଯାଇ, ଏଇ ମିଳିତ ହସାହସିରେ ସହଯୋଗ କରୁଚନ୍ତି । ବର୍ତ୍ତମାନ ପାଗଲାମି ଅବସ୍ଥା, ୱେଟର ଟ୍ରେ'ରେ ବିଅର ବୋତଲ ଭର୍ତ୍ତିକରି ତାହାରି ଫର୍ମାଇସି ମତେ ଆଣୁଚି; କିନ୍ତୁ ବୋତଲକ ଅଧାବାଟରୁ ଗାଏବ୍ ଅନ୍ୟମାନଙ୍କଦ୍ୱାରା । ୱେଟର୍ ବ୍ୟସ୍ତ ହୋଇ ରୁମ୍‌ନମ୍ବର ଲେଖୁ ଲେଖୁ ପାଟି ହଉଚି, 'ବାବୁ ଏ ପଟକୁ ଟିକେ ଆସ ।' ଏପରି କି ଛତ୍ରୁପଥ ପାଖେ ଲମ୍ବାହୋଇ ଅଇନା ପରି ଚକ୍ ଚକ୍ ଖପୁରିବାଲା ଲୋକଟିଏ ବି ତା'ର ପଦ୍ମାସନରୁ ଉଠିଆସି ସେଇ କାଗଜକୁ ଅନେଇ ହୋ' ହୋ' ହସୁଚି । ଜଣେ ବିଦେଶୀ ସ୍ତ୍ରୀଲୋକ ହେ-ଏ୍ୟ-ଓ୍ୟ···କରି ମୋତେ ହାତଠାରି ଡାକୁଚି; ମୁଁ ବୋଧେ ଭିତରେ ଭିତରେ ତା'ର ସେଇ ଡାକକୁ ଅପେକ୍ଷା କରିଥିଲି; କାରଣ ମୁଁ ସହଜେ ଲାଜକୁଳୀ ଓ ଇଚ୍ଛାଥିଲେ ବି ଯାଆନ୍ତି ନାହିଁ, ତେଣୁ ମୋ ପାଟିରୁ ଫଟ୍‌କିନା ଇଂରାଜୀରେ ବାହାରିଆସିଲା, 'ରୁହ, ରୁହ, ମୁଁ ଆସୁଚି ।' ସ୍ତ୍ରୀଲୋକଟି ମୋତେ ଠେଲି ଠେଲି ହେଇ ଦଳ ଭିତରେ ପଶିବାକୁ ସାହାଯ୍ୟ କରୁଚି ଓ ସେଇ କାଗଜଟିକୁ ବଢ଼େଇ ଦଉଚି ଯହିଁରେ ସେଇ ଅଧାଚନ୍ଦା··· ଇତ୍ୟାଦି ଲୋକଟିର ଅବିକଳ କାର୍ଟୁନଟିଏ—ଯେ ଏବେ ଅନନ୍ୟୋପାୟ ହୋଇ ହସୁଚି । ତଳକୁ ମୁହଁପୋଡ଼ି ଜଳାକାରଟି କାହାର ଚନ୍ଦ ଆର୍କିଦେଇଚି ଦୁଇ ଗୃହେଟି ଚଟାପଟ୍ ପେନ୍‌ସିଲ୍ ଗାରରେ, ମଣିଷ ମୁହଁର । 'ମଣିଷ ମୁହଁରେ, କଣ ଥାଏ ଅପରିବର୍ତ୍ତନୀୟ ହୋଇ ଯେ,

ଯେତେ ଯାହା କଲେ ବି, ମଣିଷର ମୁହଁଟି ଅପରିବର୍ତ୍ତନୀୟ ଓ କୌଣସି ନା କୌଣସି କାରଣରୁ ଚିହ୍ନା ଚିହ୍ନା ରହିଯାଏ ?' ଏଇଆ ଭାବି ମୁଁ ଅନ୍ୟମନସ୍କ । ଲୋକେ ଏବେ ସେଇ ଅଣଚିହ୍ନା···ଇତ୍ୟାଦି ଲୋକଟିକୁ ଭୁଲିଯାଇ, ପରେ ପରେ ଜଣେ ଯାନ ବାଗଣ୍ଡୀ ମୋଟୀ ସ୍ତ୍ରୀଲୋକ, ଯା'ର ଗୋଡ଼ ଟ୍ରଡର୍ଣ୍ଣରର ମୂଳାପରି ମୋଟା, ତା' ଆଡ଼କୁ ଓ ତା'ର କାର୍ଟୁନ୍‌କୁ ଅନେଇ ଅନେଇ ହସି ହସି ଗଡ଼ି ଯାଉଛନ୍ତି; ଏପରିକି ସେଇ ସ୍ତ୍ରୀଲୋକର ଅର୍ଦ୍ଧବୃତ୍ତାକାର ଫ୍ରେମ୍‌ବାଲା ଚଷମା ପିନ୍ଧା ମୋଟା ସ୍ୱାମୀ ହସି ହସି ଗଡ଼ିଯାଉଛି । ବୋଧେ ତା' ସ୍ତ୍ରୀକୁ ଅନେକ ଦିନ ହେଲା ଏଇ କଥାଟା କହିବ କହିବ ବୋଲି ଭାବି ସେ କହିପାରି ନାହିଁ, ଆଜି ସୁଯୋଗ ପାଇଛି । ମୁଁ ଏପର୍ଯ୍ୟନ୍ତ ଶଙ୍କର-ବଂଶୀବାଦକକୁ ଦେଖିନାହିଁ; କିନ୍ତୁ କେମିତି କେମିତି ଚିହ୍ନା ଚିହ୍ନା ଲାଗୁଛି ସେ । ଏଇ ବେଳେ ଜଣେ କ୍ୟାମେରା ଧରି ପାଞ୍ଚଟି ଭାଷାରେ, ଛଅ ହାତଥର କଳାକାର ସାମ୍ନାରୁ ରାସ୍ତା ଫାଙ୍କା କରିବା ପାଇଁ ପାଟି କରୁଛି, ହ୍ୱିସିଲ୍ ବଜାଉଛି ଓ ତାଳି ମାରୁଛି । ଗହଳି ସମ୍ଭାଳିବାକୁ ଦି' ଗୃଟେଟି ସ୍ୱେଚ୍ଛାସେବକ—ବିଦେଶୀ ଓ ଦେଶୀ ଆଗେଇ ଆସିଲେ । କଳାକାର ପାଟି କରୁଛି, 'ଫଟୋ ନେବ ? ଫୋଟୋ ମୋର ?' ଓ ହସୁଛି, ହସି ହସି କହୁଛି, 'ତା ଆଗରୁ ମୋ ପାଉଣାଟା ମିଳିଯାଉ । ଗୋଟେ ଡବଲ୍ ହ୍ୱିସ୍କି ଓ ଦଶ ମିଲିଲିଟର ସୋଡ଼ା ।' ମୁଁ କଳାକାରକୁ ଦେଖି ନେଉଛି । ପ୍ରଥମେ ତା'ର ରବର ଟାୟାର୍ ତାଳିପକା ଜୋତା, ଆଣ୍ଠୁ ପାଖରେ ଛିଣ୍ଡିଯାଇଥିବା ପେଣ୍ଟ୍ । କ୍ୟାମେରାର୍ ଫ୍ଲାସ୍ ଝଲକି ଯାଉଛି । କଳାକାରର ମୁହଁ ପରିଷ୍କାର, ତା'ର ବଂଶୀର ସ୍ୱନ ଚ୍ଛିନ୍ନ, ତା'ର ହସ୍ତାକ୍ଷର ଦୃଢ଼ ଓ ନିଶ୍ଚିତ । ପତଳା ହୋଇଯାଇଛି । ଶୁଖିଯାଇଛି । ମୁହଁରେ ଟିକେ ଟିକେ ଦାଢ଼ି । କଳା ପଡ଼ିଯାଇଛି । ଚନ୍ଦା ହୋଇଗଲାଣି । ମୁହଁଟା ଆଉ ପିଲିଲିଆ ହୋଇ ରହିନାହିଁ, କେମିତି ଲୋକ ଲୋକ ଦିଶୁଛି; କିନ୍ତୁ ସେଇ ଚମତ୍କାର ଗଭୀର ଅଖି ଦିଓଟି ଆଗପରି ମୋତେ କ୍ୟାମେରାର ଲେନ୍ସ କଥା ମନେପକେଇ ଦେଉଛି, ଯତେ କି ସେ ଆଖିରେ ଯା'ର ବି ଛବି ପଡ଼େ, ସେ ଓ ତା'ର ଛବି ସେଇ ଆଖିର କାନନକାର ଅକ୍ଟୋପସ୍‌ର ଉଦ୍ୟାନରେ ବନ୍ଦୀ ହୋଇଯାଏ । ଶୁଭଙ୍କର !

ଶୁଭଙ୍କର ବ୍ୟତୀତ ଆଉ କିଏ ବି ହୋଇପାରିଥାନ୍ତା ! ମୋର ପ୍ରତି ଲୋମକୂପରେ ଶୁଭଙ୍କର ବିଚ୍ଛୁରିତ ହୋଇଯାଉଛି । ପ୍ରତ୍ୟେକ କାଇଲୋମ୍ ଫ୍ଲୋଏମ୍‌ରେ ମୋର ଥର ଥର ଲୋଲିହାନ୍ ପିପାସୁ ଇଚ୍ଛାର ନିଆଁ ।

ନାକ ଉପରେ ଆସ୍ତେ ମୁଁ ପାପୁଲି ହାଉଁଲେଇ ଅଣୁଛି । ମୋ ନାକ ଅଗ କୁଆଡ଼େ ସାମାନ୍ୟ, ଏକଦମ୍ ସାମାନ୍ୟ ଡାହାଣ ଆଡ଼କୁ ବଙ୍କା । ଶୁଭଙ୍କର ମୋତେ କହିଥିଲା, ଅପ୍‌ସରା ରମ୍ଭାର ନାକ କୁଆଡ଼େ ଏଇମିତି ଅଳ୍ପଟିକେ ବଙ୍କା ଥିଲା । ଶୁଭଙ୍କର ଅନେକ ସ୍ଥାପତ୍ୟ, ଚିତ୍ରକଳା ପର୍ଯ୍ୟାଲୋଚନା କରି ଏକଥା ଜାଣିଥିଲା ।

ଏକଥା ଅବିଶ୍ୱାସ କରିବାର ଯୁ' ବି ମୋର ନାହିଁ । ଶୁଭଙ୍କର ଆଗେ ସେତେବେଳେ ମୁଁ ଅବା କିଏ ? ‘ଏଇ ନାକର ଲକ୍ଷଣ’, ଶୁଭଙ୍କର କହିଲା, ‘ବିମୁଗ୍ଧ ଓ ବିଭ୍ରାନ୍ତ କରିବ । ରମ୍ଭା ପରି ଦେଇଥିପାଇଁ ବାରମ୍ବାର ଶିବଙ୍କ ତପସ୍ୟା ଓ ବ୍ରହ୍ମାଙ୍କ ସୃଷ୍ଟିର ପ୍ରୋଜେକ୍ଟ ଫ୍ଲୋଫାଇଲ୍ ଗୋଳମାଳ କରିବାପାଇଁ ବସ୍ତୁନ୍ଦ୍ରଦ୍ୱାରା ପ୍ରେରିତା ହୋଇଥିଲା । ଆଉ ମୁଁ ତ ମୁନି ଋଷି ନୁହେଁ, ନରାଧମ ପାଷାଣ୍ଡ । ମୁଁ ତାହାଦ୍ୱାରା ବିଭ୍ରାନ୍ତ ହେବା କ'ଣ ଆଶ୍ଚର୍ଯ୍ୟର ବିଷୟ ?’ ଶୁଭଙ୍କର କଥା ମୁଁ ବିଶ୍ୱାସ କଲିନି । ସେ ଏମିତି କଲେଜ୍‌ରେ ଅନେକ ଝିଅଙ୍କୁ କହୁଥିଲା, ଯୋଉମାନେ ତାକୁ ବିଶ୍ୱାସକରି, କଦବା ପାଗଳ ମଧ୍ୟ ହୋଇ ଯାଉଥିଲେ; କାରଣ ଦ୍ୱିତୀୟଥର ଦେଖାଦେଲା ବେଳରୁ ଆଉ ଶୁଭଙ୍କର ସେମାନଙ୍କୁ ଚିହ୍ନିପାରୁ ନ ଥିଲା ।

ନୂଆ ନୂଆ କଲେଜ୍ ଆସିଲାବେଳେ ଶୁଭଙ୍କର ପ୍ରାୟ ଚୁପ୍‌ଚାପ୍ । ତଳକୁ ମୁହଁପୋତି ସତେଜ ତା'ର ଅସ୍ତିତ୍ୱର ଅଧେ ଅଂଶେ ଆଉ କୋଉଠି ଗୁଡ଼ି ଆସିଚି, ସେକମିତି ଅନ୍ୟମନସ୍କ ରହୁଥିଲା । ସେ ଉଚ୍ଚତାରେ ସାନ ଥିଲା, ତା' ମୁହଁରେ ନିଶ ଦାଢ଼ି ଉଠି ନ ଥିଲା, ଅଧିକାଂଶ ସମୟରେ ତା' ବାଳ ଫୁର୍ ଫୁର୍ ସରୁ ଇସ୍ପାତ୍ ତାର ପରି ଠିଆହୋଇ ରହୁଥିଲା ଓ ପ୍ରାୟ କାହାରି ସାଙ୍ଗେ କଥା କହୁ ନ ଥିଲା । ସେଦିନଠୁ ମୁଁ ତାକୁ ଲକ୍ଷ୍ୟ କରିଦେଲି ଓ ଜାଣିଥିଲି ଶୁଭଙ୍କର ସାଧାରଣ ପିଲା ନୁହେଁ । ସେ ପଛ ବେଞ୍ଚରେ ବସି ଯାବତୀୟ ଗୋଳମାଳ ଘଟେଇ ଚୁପ୍‌ଚାପ୍ ଖସି ଯାଉଥିଲା; କିନ୍ତୁ କ'ଣ ଘଟୁଚି, ହୃଦ୍‌ବୋଧ ହେବା ପୂର୍ବରୁ ପିଲାଟି ବୟସରେ ବଡ଼ ଓ ଉଚ୍ଚତାରେ ଡେଙ୍ଗା ହୋଇଗଲା, ପ୍ରଥମେ ନାଟ୍ୟସଂସଦର ସମ୍ପାଦକ ଓ ପରବର୍ଷ କଲେଜ୍ ୟୁନିୟନ୍‌ର ସଭାପତି ପାଇଁ ପ୍ରତିଦ୍ୱନ୍ଦ୍ୱିତା କରି ଉଭୟଥର ନିର୍ବାଚିତ ହୋଇଗଲା । ସ୍ୱା' ଭିତରେ ସେ ଝିଅଙ୍କ ହଷ୍ଟେଲ୍‌କୁ ଆସିବାକୁ ଆରମ୍ଭ କଲା, ଗୀତ ଗାଇଲା, ବଂଶୀ ବଜେଇଲା, ଚିତ୍ର ଆଙ୍କିଲା, ନାଟକରେ ନାୟକ ହେଲା ଓ ଅନ୍ୟ ଝିଅପିଲାଙ୍କ ଜୈବ ବିଜ୍ଞାନ ପ୍ରାକ୍‌ଟିକାଲ୍ ଖାତାରେ ଅହରପାର ଅଦରକାଣ୍ଡି ନର୍ଭସ ସିଷ୍ଟମ, ମନ୍ଦାରଫୁଲର ବନ୍ଧ୍ୟା ଜରାୟୁ ଓ ବ୍ୟାକ୍ଟେରିଆମାନଙ୍କର ଅବୋଧ ପ୍ରଜନନ ପ୍ରକ୍ରିୟା ଇତ୍ୟାଦିର ଚିତ୍ର ଆଙ୍କିଲା ଓ ନିୟମିତ ଲେଡିଜ୍ ହଷ୍ଟେଲ ଆସିଲା, ଆସିବାକୁ ବାଧ୍ୟ ହେଲା ।

ଏଇ ସମୟରେ, ସେ ଭବିଷ୍ୟତରେ ଶାନ୍ତିନିକେତନ ପରି ଓଡ଼ିଶାରେ ଗୋଟିଏ ବିଶ୍ୱବିଦ୍ୟାଳୟ ସ୍ଥାପନ କରିବ ବୋଲି ଆମ ହଷ୍ଟେଲରେ ପ୍ରାୟ ସମସ୍ତେ ବିଶ୍ୱାସ କରୁଥିଲେ । ତା'ର ଏଇ ଲୋକପ୍ରିୟତା ସତ୍ତ୍ୱେ, କୌଣସି ଏକ ଆଜନ୍ମ ଲଜଲଜ ଅବବୋଧରେ ସେ ବାରମ୍ବାର ଛନ୍ଦ ହୋଇପଡ଼ୁଚି ବୋଲି ମୁଁ ଭାବୁଥିଲି । ମୁଁ ସବୁବେଳେ ନିଜକୁ କିଛି ପରିମାଣରେ ଦାର୍ଶନିକ ବୋଲି ଭାବେ । ତେଣୁ ଜିନିଷମାନଙ୍କୁ

ଠିକେ ଠିକେ ନିଜ ଜାଗାରେ ଥୁଏ ଛାଡ଼ିଦେଇ ସନ୍ତ ସନ୍ତ କାଟି ପରୀକ୍ଷା କରିପାରେ ବୋଲି ବିଶ୍ୱାସ କରେ । ଏଇ ହିସାବରେ କହୁଚି ଯେ, ଆମ ହଷ୍ଟେଲର ଅନ୍ୟ ଝିଅ ହେଉ-ବେଳେ ବି, ଯେତେବେଳେ କି କୈଶୋରର ନୈତିକତାବୋଧ ଶଙ୍କାର ନୈତିକ ଇଚ୍ଛାମାନଙ୍କୁ ଅନ୍ତରାଳରେ ରଖିଥାଏ, ଶୁଭଙ୍କରର ସାମାନ୍ୟତମ ଇଶାରାରେ ତଥାକଥିତ ପାପ, ପାପ-ଜନିତ ପାପ, ପାପ-ଜନିତ ପାପ-ଜନିତ ପାପ ଇତ୍ୟାଦି-ମାନଙ୍କୁ ଫୁତ୍କାରମାତ୍ର ଉଡ଼େଇଦେଇ ନିକଟରେ କଅଁରୁଦା ଆରପଟେ ଉଲଗ୍ନ ହୋଇ ପଡ଼ିଥାନ୍ତେ । ଏପରି ଭାବିବା ମୋର କୌଣସି ଜଟିଳ ମାନସିକ ଦ୍ୱନ୍ଦ୍ୱଦ୍ୱାରା ପ୍ରସୂତ ହୋଇପାରେ । ସମ୍ଭବ, ଖୁବ୍ ସମ୍ଭବ; କିନ୍ତୁ ଶୁଭଙ୍କର ଆମ ହଷ୍ଟେଲକୁ ଆସିବା ମାତ୍ରକେ ମୁଁ ପଲପଟକୁ ଭୁଲିଯାଇ ସାଲଦାନୀପା ଉପରେ ବସି ପଡ଼ୁଥିଲି ଓ ମୋର ସବୁ ଚେଷ୍ଟାସତ୍ତ୍ୱେ ମୋ ମନ ଭିତରକୁ ଶୁଭଙ୍କର ବାରମ୍ବାର ଧସେଇ ପଶି ଆସୁଥିଲା । ଏଇଠି ମୁଁ ମାନିନେବି ଯେ ଅନେକଦିନ ତ ହୋଇଗଲାଣି, ଯେହେତୁ ମାନିନବା ନ ନବାରେ କ'ଣ ବା ଏମିତି ଫରକ, ଅନ୍ତତଃ ନିଜ ଆଗରେ; ( ଯଦିବା ସ୍ୱାମୀଙ୍କ ଆଗରେ କିମ୍ବା ଶୁଭଙ୍କର ଆଗରେ ନୁହଁ ) ଶୁଭଙ୍କରକୁ କୌଣସି ଏକ ବୁଝିପାରୁ ନ ଥିବା ଓ ବୁଝେଇ ହେଉନଥିବା ଉପାୟରେ ମୁଁ ପ୍ରେମ କରିବାକୁ ଆରମ୍ଭ କରୁଥିଲି ଓ ଏବଂବିଧ ଆଶ୍ଚର୍ଯ୍ୟଜନକ କାରଣରୁ, ଶୁଭଙ୍କର ମୋତେ ପ୍ରେମ କରୁଚି ବୋଲି ମଧ୍ୟ ଭାବୁଥିଲି । ଠିକ୍ ଏଇମିତି ଅନେକ ଅନେକ ଝିଅ ଭାବୁଥିଲେ । ଦିନେ ଶୁଭଙ୍କର ହଠାତ୍ ହୁଇସିଲ୍ ମାରି ମାରି ଆମ ରୁମ୍‌କୁ ପଶି ଆସିଲା; ମୁଁ ମ୍ୟାକ୍‌ସି ପିନ୍ଧି ବରଣ୍ଡାରେ-ବସି ଝରକା ବାହାରର ଆକାଶକୁ ମେଘ ଉପରକୁ ଅନେଇଥିଲି, ମ୍ୟାକ୍‌ସିର ଗୋଟେ ହୁକ୍ ଛିଣ୍ଡିଯାଇଥିଲା ବୋଲି ହଠାତ୍ ଶୁଭଙ୍କର ପଶି ଆସନ୍ତେ ମୁଁ ବୁକପଟ କାନ୍ଥକୁ ପିଠିକରି ବସିବାକୁ ବାଧ୍ୟହେଲି; କିନ୍ତୁ କି ଦୁର୍ବୋଧ୍ୟ ଲାଜରେ କେଜାଣି ମୁଁ ଶୁଭଙ୍କରର ସୁନ୍ଦର ଝଟକୋଳ ମୁହଁକୁ ଅନେଇବାକୁ ଅସମର୍ଥ, ତେଣୁ ମୁଁ "ଗୃହକର୍ମ ଓ ମ୍ୟାକିଏଭେଲିଙ୍କ ଦର୍ଶନର ସାମଞ୍ଜସ୍ୟ ଓ ତାରତମ୍ୟ" ଶୀର୍ଷକ ସୁଲତେଡ଼ନର କୌଣସି ପେଟ୍ରୋଲିଅମ୍ କମ୍ପାନୀର ମୁଖ୍ୟ ଏକ୍‌ଜିକ୍ୟୁଟିଭଙ୍କଦ୍ୱାରା ଲିଖିତ ପୁସ୍ତକଦ୍ୱାରା ମୋ ମୁହଁ ଘୋଡ଼େଇ ରଖିଲି । ଏତେବେଳେ ମୋର ତିନିଜଣ ରୁମ୍‌ମେଟ୍ ଶୁଭଙ୍କରକୁ ନିଜ ନିଜ ପାପୁଲି ଦେଖେଇ ଭବିଷ୍ୟତ ବିଷୟରେ ଜାଣିବାକୁ ବ୍ୟସ୍ତକରି ପକଉ-ଥିଲେ । "କ'ଣ ଆଉ ସେ ଭବିଷ୍ୟତରେ ଥିବ ଯେ ।" ମୁଁ ଭାବିଲି, 'ଅନ୍ଧାରେ ଛୁଆ, ସକାଳୁ ରାତିଯାଏ କାମ ଓ ରାତିରେ ଦୁଇମିନିଟ୍ ଦୁଧଛଡ଼ା ଗାଈର ପ୍ରେମବିଳାପ ପାଇଁ ବରଷ !" ହୋ ହୋ ହସ ଶୁଣି ବହି ତଳକୁ ଖସେଇଲି, ଶୁଭଙ୍କର ମୋର ବନ୍ଧୁରଙ୍କା ଚନ୍ଦ୍ର ଆଙ୍କି ଦେଉଥିଲା, ଯଦ୍ଦ୍ୱାରେ ମ୍ୟାକ୍‌ସିର ହାତର କୁଣ୍ଠାରୁ ପଷ୍ଟୋର ଜଣାପଡ଼ୁଚି ଯେ ପନ୍ଦପଟେ ହୁକ୍ ଛିଣ୍ଡିଯାଇଛି । ମୁଁ ରାଗିବାକୁ ଚେଷ୍ଟା କରୁଥିଲି; କିନ୍ତୁ ଶୁଭଙ୍କର ଉପରେ କିଏ ରାଗେ ଯେ ? ତଥାପି କହିଲି, "ମୋର ଚନ୍ଦ ଆଙ୍କିବା ଦୁଃଖକୁ ମୋତେ ପଚାରିନବା ଉଚିତ ହୋଇ ନ ଥାନ୍ତା କି ?" ଓ କହିଲାବେଳେ

ମୋର ରୁମ୍‌ମେଟ୍‌ମାନଙ୍କର ଅନୁଚ୍ଚାରିତ ପ୍ରଶ୍ନଗୁଡ଼ିକୁ ଅନୁଭବ କରୁଥିଲି, "ତୁ କ'ଣ ବିଶ୍ୱବିଦ୍ୟାଳୟ କଲେ ତୋର ଅନୁମତି ନେଉ଼ା ?" ଶୁଭଙ୍କର ମୋ ପ୍ରଶ୍ନର ଉତ୍ତର ଦେଲାନି, କହିଲା ଆରପଟେ ଓଲଟେଇ ଦେଖ । ଆରପଟେ ଅତି ସୁନ୍ଦର ଗୋଲ ଗୋଲ କଳ୍ପ ପୂଅପିଲା ଅକ୍ଷରରେ ସେ ଲେଖିଥିଲା, 'ଯେବେ ରାତି ଆସିଯିବ, ତାରାମାନେ ନଭଦନା ଗଗନରେ ବୋର୍‌ଦ୍ୱୋଇ ଆଖିପତାମାନ ବନ୍ଦ କରିଦେବେ, ଅପନ୍ତଭମନେ କାହିଁ କୁଆଡ଼େ ଦୃଷ୍ଟିର ଅଗୋଚରେ, ରୂପାଲି ବାଲିକା ତୁ ବାହାରିବୁ ହରୁଟ୍ ଭଦ୍ରଙ୍କର ନଈବଡ଼ି ଉପରେ ବି, ତୋ ସ୍ୱପ୍ନମାନେ ଚକ୍ ଚକ୍ କରୁଥିବେ ଅନେକ ଦୂରରେ ଗ୍ୟାଲକ୍‌ସି ପରି; ଘୋର ସଂସାରର ଜଙ୍ଗଲରେ ମୋ ସ୍ମୃତି ତୋତେ ସାହାଯ୍ୟ କରିନେବ ଡାଲପତ୍ର ଆଡ଼େଇ ନେଇ ଆଗେଇ ଯିବାକୁ ।' ମୁଁ ଯଦି ଶୁଭଙ୍କର ପ୍ରେମରେ ପଡ଼ି ନ ଥାନ୍ତି, ତା'ହେଲେ ଏହାର ଅର୍ଥ ହୋଇଥାନ୍ତା ମୋର ହୃଦୟ ନାହିଁ, ଯଦିଚ ଏଇମିତି ଅନେକ କଥା ସେ ଅନେକ ଝିଅଙ୍କୁ କହିଥିବ, କହିସାରି ଭୁଲିଯାଇଥିବ ।

ଶୁଭଙ୍କର ଏଇନେ ପାର୍ଟି କରୁଚି, 'ଆଉ ଗୋଟେ ଡବଲ ପେଗ୍ ହ୍ୱିସ୍କି ଦିଅନ୍ତୁ, ଦଶ ମିଲିଲିଟର୍ ସୋଡ଼ା ସହ ।' ମୋର ଇଚ୍ଛା ହଉଚି, ଶୁଭଙ୍କରକୁ ଗୁଳି କରି ମାରିଦିଅନ୍ତି । ଶୁଭଙ୍କର ! ତୁ ଶେଷରେ, ଆଉ କେହି ନୁହେଁ, ଶୁଭଙ୍କର, ଖୋଦ୍ !

ଶୁଭଙ୍କରକୁ ଯେ ଅନେକ ଝିଅ ବାହାହେବାର ଇଚ୍ଛା ମନେ ମନେ ଲୁଚେଇ ଲୁଚେଇ ରଖିଥିଲେ, ସେଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ସେମାନଙ୍କ ଭିତରୁ ଜଣେ ଆମଠୁ ଦି'ବର୍ଷ ଉପରେ ପଢ଼ୁଥିଲା ଓ ତା'ର ଚମଡ଼ା ଏତେ ଗୋରା ଯେ ତା'ର ବୟସ ଜାଣିବା ଅସମ୍ଭବ; କିନ୍ତୁ ସେ ନିଶ୍ଚୟ ଶୁଭଙ୍କରଠୁ ବୟସରେ ବଡ଼ ହୋଇଥିବ । ଏଇ ଝିଅଟିର ବାପା, ମାମୁ, ଦାଦା, ଜେଜେମା, କକାପୁଅ ଭାଇ ଯଥାକ୍ରମେ ଉଚ୍ଚପଦସ୍ଥ ଅଫିସର, ସ୍ଥାନୀୟ ଜିଲ୍ଲା ପରିଷଦର ଚେୟାରମ୍ୟାନ୍ କୋ-ଅପରେଟିଭ ବ୍ୟାଙ୍କର ପ୍ରେସିଡେଣ୍ଟ, ସମାଜ କଲ୍ୟାଣ ସମିତିର ସଭାପତି (ପତ୍ନୀ) ଓ କୌଣସି ରାଜନୈତିକ ଦଳର ଯୁବଶାଖାର ସମ୍ପାଦକ ଥିଲେ । ଏହାଙ୍କ ସାହାଯ୍ୟରେ ଶୁଭଙ୍କରର ଚିତ୍ରମାନ କୌଣସି ରାଜ୍ୟସ୍ତରୀୟ ଚିତ୍ରକଳା ପ୍ରଦର୍ଶନୀରେ ପ୍ରଦର୍ଶିତ ହେଉଥିଲା (ଏସବୁ ଚିତ୍ରର ସର୍ବସ୍ୱତ୍ୱାଧିକାରୀ ସେଇ ଝିଅଟି ଥିଲା) ଓ ଶୁଭଙ୍କର ପ୍ରଥମ ପୁରସ୍କାର 'ଲଭ' କଲା । ଏଇ ପୁରସ୍କାର ପାଇସାରି ସେ କୁଆଡ଼େ ଭ୍ରାନ୍ତ ହୋଇଗଲା ଓ ଚିତ୍ର ଅଙ୍କିବା ବନ୍ଦ କରିଦେଲା । ବେଶ୍ କରିଛି; କିନ୍ତୁ ସେ କାହିଁକି ଯେ ସେ ଚିତ୍ରକଳାରେ ଭାଗ ନେଇଥିଲା ? ତା'ର ପଇସା ଦରକାର

ଥିଲି । ସେ ଶୁଭଙ୍କର ମୋର, ଯେ କଅଁଳିଆ ଖରାରେ, କ୍ଷତବିକ୍ଷତ ଜ୍ୟୋତ୍ସ୍ନାମାନଙ୍କର ରଣକ୍ଷେତ୍ରରେ, ଉଦ୍‌ଭ୍ରାନ୍ତ ଶରତ୍‌ର ବିଶ୍ୱାସଘାତକ ନମନୀୟତାରେ ଶୋଇଲା; ସେଇ ଶୋଇପଡ଼ିଥିବା ଶୁଭଙ୍କର ମୋର ଶୁଭଙ୍କର । ଚିତ୍ର ପ୍ରଦର୍ଶନୀରେ ଭାଗ ନେଇଥିବା ଶୁଭଙ୍କର ମୋର ନୁହେଁ ।

କେହି କେହି କହିଲେ ଶୁଭଙ୍କର ତା'ଠୁ ବୟସରେ ବଡ଼ ସେଇ ସ୍ତ୍ରୀ ଲୋକଟିକୁ ବାହାହେଲା, କାରଣ ଝିଅଟିର ଚାକିରି ଥିଲା ଓ ପୈତୃକ ସମ୍ପତ୍ତି ବି କିଛି ଥିଲା । ଯା' ପରେ ପରେ ଦିନେ କୁଆଡ଼େ ଶୁଭଙ୍କର କାହାକୁ କିଛି ନ କହି ଦିଲ୍ଲୀ ଚାଲିଗଲା ଓ କୁତବମିନାର୍ ପାଖେ ଟିଣପାଢିଆ ଚଟଚଳବିକାଳୀ ପାଖେ ବସି ଦଶଟଙ୍କା ବିନିମୟରେ ପାଞ୍ଚମିନିଟ୍‌ରେ ଟୁରିଷ୍ଟମାନଙ୍କର ଚିତ୍ର ଆଙ୍କୁଥିଲା । ଏଇବେଳେ ସେ ନରୱେ, କିମ୍ବା ସ୍ୱିଜରଲାଣ୍ଡର କୌଣସି ଧନୀ ବଣିକର ଏକମାତ୍ର ଅବଳାର ପ୍ରେମର ପାତ୍ର ହୋଇଗଲା ଓ ସେଇ ଅବଳାର ବିଭିନ୍ନ ପୋଜ୍‌ରେ ପେନ୍ସିଲ୍ ସ୍କେଚ୍ ମାସେଖଣ୍ଡେ ଆଙ୍କିଲା ପରେ ତାକୁ ବାହାହୋଇ ବିଦେଶକୁ ଚାଲିଗଲା । ମୋ ବାହାଘରବେଳେ ମୁଁ ଏକଥା ଶୁଣିଥିଲି ।

ଏଇସବୁ ହୋ' ହୋ' ଶୁଣି ମୋ ସ୍ୱାମୀ ତଳକୁ ଆସିଲାବେଳରୁ ମୁଁ ଆଉ ଏ ସଂସାରରେ ନାହିଁ, ଅସଂଖ୍ୟ ଦୀର୍ଘଶ୍ୱାସ ଅନେକ ଦୁଃଖରେ ମୁଁ ଅସ୍ତବ୍ୟସ୍ତ । ମୁଁ ସିଧା ଠିଆ ହୋଇପାରୁ ନାହିଁ, ଶୁଭଙ୍କର ଆଡ଼କୁ ଅନେଇ ପାରୁନି । ଶୁଭଙ୍କର ମୋତେ ଦେଖିଛି ଓ ଦେଖି ଭୁଲିଯାଇଛି ? ତା' ମନରେ କ'ଣ ଅଛି ମୁଁ ଜାଣେ-ନାହିଁ । ମୋ ମନରେ କ'ଣ ଅଛି ସେ ଜାଣେ ନାହିଁ କିମ୍ବା ସବୁ କଥା ଜାଣି-ପାରୁଥିବା ଶୁଭଙ୍କର ଜାଣେ ଓ କହୁନାହିଁ ? ଅଗତ୍ୟା କିଛି କହିବ ନାହିଁ ବୋଲି । ତା' ଅଭିମାନରେ ଅଶ୍ରୁ ଆସିଯିବ, ଏହା ସିନା କୈଶୋରର ଲକ୍ଷଣ—ଏଇ ପ୍ରକାରର ଆଗେ କଥା ନ କହିବାର ସ୍ୱାଭିମାନ, ଏବେର ଶୁଭଙ୍କର କ'ଣ ତା' ଦିଲ୍ ଭିତରେ ସାନ କିଶୋରର ହୃଦୟଟିଏ କୋଉଠି ଲୁଚେଇ ରଖିଦେଇଛି କି ? ସେ ଜାଣେ ଓ ମୁଁ ଜାଣେ ଯେ ସେ ଜଣେ ଚିତ୍ରକାର ସବୁଠୁ ସାନ ଦୁଲୁକି ଦୁଲୁକି ଗୋଟିଏ ଡଙ୍ଗା, କାତ ନ ଥିବ କି ଆହୁଲା ନ ଥିବ, ଟିକେ ବୁଡ଼ିଯିବ, ସେଇଥିରେ ବସି ଯାବତୀୟ ଗସିପ୍—ଭାଇ-ବନ୍ଧୁ-ବାନ୍ଧବ, କଲେଜ-ଷ୍ଟାଫ-ପ୍ରଜାପତି, ଗୁଜବ, ସତୀତ୍ୱକୁ ସେଇ ଢେଉରେ ଭସେଇ ଦେଇ, ତା' ସାଙ୍ଗେ ଚାଲିଯିବାକୁ ମୁଁ ରାଜି ଅଛି । ମୁଁ ଆଉ ବସି ପାରୁନି । କେମିତି ବସିବି ଯେ ? ତା ବିନା ? ନାଉରିଆଟିଏ । ପ୍ରେମ ଲୋକ ନାଉରିଆ ଗଦ୍‌ଗଦ୍ ହୋଇ କହୁଚି କେମିତି ସ୍କାଣ୍ଡିନେଭିଆର କୌଣସି ପର୍ଯ୍ୟଟକ ତା' ପାଖକୁ ରଙ୍ଗିନ୍ ଫଟୋଟିଏ ପଠେଇଥିଲା । ଶୁଭଙ୍କର ମୋତେ

ଟଳିବାକୁ ଅସ୍ୱୀକାର କରି ଦେଉଛନ୍ତି—ତା'ର ରମ୍ଭାକୁ ଯେ, ଋଷିମୁନିମାନଙ୍କୁ ବିଭ୍ରାନ୍ତ କରେ । କିଏ ଅସ୍ୱୀକାର କଲା କି ? ହେ, ଶୁଭଙ୍କର ନୁହଁ ମ, ଏଇ ଅସ୍ୱୀକାର କରୁଥିବା ଲୋକଟି ଶୁଭଙ୍କର ନୁହଁ—ଏ'ତ ସମୟ ।

ଶୁଭଙ୍କର ଏଠି କ'ଣ କରୁଚି ?

ଏତେଗୁଡ଼ାଏ ସ୍ମୃତି ନେଇ ଏଠି ବୁଲେ ଫାଲ୍‌ତୁ ଲୋକଙ୍କ ଗହଣରେ ? ସେ ଶୁଭଙ୍କର ନୁହେଁ । ସେ ସମୟ । ନିଷ୍ଠୁର କଳା, କଦର୍ଯ୍ୟ ଅବୋଧ ସମୟ, ଶୁଭଙ୍କର ! ଫେରେଇ ଦେ'ରେ, ସମୟକୁ ତା'ର ଅଙ୍ଗାର, ତା'ର ଧୂସର ରଙ୍ଗ, ତା'ର ଅନ୍ଧାର, ତା'ର ଶୂନ୍ୟସ୍ଥାନ । ଶୁଭଙ୍କର ମୋ ଆଡ଼କୁ ଅନାଉଚି, ଅନ୍ୟମନସ୍କ; ସେମିତିକା ଋଷିର ତପସ୍ୟା ଭାଙ୍ଗିଗଲା । ମୋତେ ଶୁଭଙ୍କର ଅଭିଶାପ ଦବ କି ? ଜାଳିଦବ କି ? ମୋ ସ୍ୱାମୀଙ୍କୁ ମୁଁ ଅନାଉଚି, ଛଅଫୁଟ୍ ଉଚ୍ଚ, ଛୟାଅଶୀ କି. ଗ୍ରା. ବିଶିଷ୍ଟ ସଦ୍ୟ ଦ'ବୋତଲ ବିଅର୍‌ରେ ଉତ୍ଫୁଲ୍ଲ ମୋର ସ୍ୱାମୀ ।

ଏଇ ଅସ୍ଥିର ଜୀବନରେ ଏତେଗୁଡ଼ାଏ ସ୍ମୃତି ନେଇ ଶୁଭଙ୍କର ଆଉ କରିଥାନ୍ତା ବା କ'ଣ ।

ସନ୍ଧ୍ୟାର ଲମ୍ବା ଲମ୍ବା ଇଉକାଲିପ୍‌ଟସ୍ ଗଛ । ଝୁଲୁଥିବା ଲଣ୍ଠନ୍ ଆଉ ସଫା ବଗିଚା, କମ୍ପା ହନିମୁନ୍ ପାହାଡ଼ । ସକାଳୁ ନାଉରିଆ କହୁଥିଲା, ସେଠି ସାପ ଭର୍ତ୍ତି । ସ୍ୱାମୀ ଓ ମୁଁ ସାଙ୍ଗହୋଇ ଆମ ରୁମ୍‌କୁ ଫେରୁଚୁ । ସ୍ୱାମୀ ବିଅର୍ ମଗଉଛନ୍ତି । ମୁଁ କିଛି କହୁନି । ପୁଣି ତଳକୁ ଓହ୍ଲେଇ ଆସି ଦେବଦାରୁ ପତ୍ରର ଚେଇଁଚେଇଁକା ଧାରରେ ହାତ ସାଉଁଳଉଚି । ରମ୍ଭାପରି ନାକ । ବିଭ୍ରାନ୍ତ କରିବାର ନାକ !

ହୁଃ ବାଜେ କଥା । ସତୀତ୍ୱରେ ବିଶ୍ୱାସ ନ କଲେ ହେଁ, ମୁଁ ଏକପତି ହୋଇ ବଞ୍ଚିଚାଲିଚି ତ ? ମସ୍ୟୁରର ରଙ୍ଗମାନ ଚେହେରା ଦେଖୁଛି । ନାଉରିଆଟିଏ ବିଦେଶୀ ଟୁରିଷ୍ଟ୍‌ର ଅନୁଗ୍ରହ, ସନ୍ଧ୍ୟା, ଚିଲିକାର ସାବଜୀୟ ଅନ୍ଧଭୟ ଓ କୁମ୍ଭୀରର ମାଛ ବ୍ୟବସାୟର ଲୋଭରେ ହଜିଯାଉଛି ।

ମୁଁ ବ୍ୟଗ୍ର । ବ୍ୟାକୁଳ । ଧର ଯଦି ଶୁଭଙ୍କର କାଲି ନ ଆସେ ? ଏକ ଅଶଙ୍କାରେ ମୁଁ ଭୟଭୀତ । ଟୁରିଷ୍ଟ୍ ବଙ୍ଗଳାର ଓ୍ୱେଟର ପାଖରୁ ସେଇ ଚନ୍ଦକରଟିର ସମ୍ବାଦ ନବାକୁ ଚେଷ୍ଟାକରୁଛି । ଓ୍ୱେଟର୍‌ର ଆଶ୍ୱାସନା ମତେ, ଶୁଭଙ୍କର ଗାଡ଼ରେ ଏଇଠି ରହୁଛି ।

ପରଦିନ ଭୋର । ନିଦ ମଳା ମଳା ଆଖିରେ ଚଳନ୍ତାର ସୂର୍ଯ୍ୟୋଦୟ ଦେଖିବାକୁ ମୁଁ ବାଲ୍‌କୋନିରେ ବସିଛି । ଶୁଭଙ୍କର କୋଉଠି ଅଛି, ତଳକୁ ମୁହଁ ଝାଙ୍କି ଝାଙ୍କି ଅସୁଚି, ଯେମିତି ସେ ଅନେକ ଦିନ ଅନେକ ଅସିଛି । ନୂଆ ନୂଆ କଲେଜ ଆସିଲବେଳେ । 'ଏଇ ଲୋକଟି ଜାଲ' ସ୍ୱାମୀ କହିଲେ, 'ବଂଶୀ ବଜାଉ ଥିଲା ।' 'ଏତେ ସକାଳୁ କ'ଣ ଗୋପୀଏ ଉଠିବେଣି' ମୁଁ କହିଲି । 'ସବୁ ଟୁରିଷ୍ଟମାନେ ମନେ ମନେ କ'ଣ ଗୋଟେ ମନୋମୁଗ୍ଧକର ଘଟଣା ଘଟନ୍ତା କି ବୋଲି ଆଶା କରୁଥାନ୍ତି, ନୁହେଁ ?'

ଶୁଭଙ୍କର ଠିକ୍ ଆମ ବାଲ୍‌କୋନି ତଳେ ଅଦୃଶ୍ୟ ହେବାର ଟିକେ ପରେ ତଳେ ରିସେପ୍ସନ ପାଖରେ ହୋ' ହା' ଶୁଭିଲା । ସ୍ୱାମୀ ଓ ମୁଁ ଦୁହେଁ ତଳକୁ ଆସିଲୁ । ଶୁଭଙ୍କର ପାଖରେ ରୁମ୍‌ଭଡ଼ା ଦେବାକୁ ପଇସା ନ ଥିଲା । ଜଣେ ନାଇକେରଅନ୍ କାଳିଆ ନଟିମାଟି ଲୋକ ମାଝ ରୁମ୍‌ରୁ ଆସି କ'ଣ ହେଉଛି ବୋଲି ବୁଝି ଶୁଭଙ୍କରର ବିଲ୍ ଦେଇଦେବା ସହିତ ସେ ଡୁଙ୍ଗ ଦେବାକୁ ରାଜି ଅଛି ବୋଲି କହିଲା, ଯଦି ମ୍ୟାନେଜର ଶୁଭଙ୍କରକୁ କ୍ଷମା ମାଗେ । ମ୍ୟାନେଜର କ୍ଷମା ମାଗିନେଲା । ଶୁଭଙ୍କର ଲାଜରେ ତଳକୁ ମୁହଁ ପୋତୁନାହିଁ, (ସେ କ'ଣ ଲଜ୍ଜା କରୁ ବୋଲି ମୁଁ ବୁଝୁଛି, କେଜାଣି ? ଜାଣେନା) ଗର୍ବ ଅନୁଭବ କରୁନାହିଁ, କାବୁ ହେଉନାହିଁ, ଉଦ୍‌ବେଗ ପ୍ରକାଶ କରୁନାହିଁ, ନିଜ ଉତ୍କଣ୍ଠା ଜାହିର କରୁନାହିଁ, ଏକ ଅବ୍ୟବସ୍ଥା—ଏଠି ସେ ଅଛି କି ନାହିଁ କେଜାଣି ?

ଶୁଭଙ୍କର ପକେଟରେ ହାତ ଭର୍ତ୍ତି କରି କୌଣସି ଅଦୃଶ୍ୟ ଲୋକ ସାଙ୍ଗେ ବୋଧେ ଅଶ୍ରାବ୍ୟ ଯୁଦ୍ଧ କଲାପରି ମୁଣ୍ଡ ହଲେଇ ହଲେଇ ଚାଲିଯାଉଛି; ଦାଣ୍ଡ ପଟେ ବାହାରକୁ । ଅନେକ ଲୋକ ନିଜ ନିଜ ରୁମ୍‌ରୁ ବାହାରି ଆସି ତାକୁ ବିଦାୟ ଜଣାଉଛନ୍ତି । ସେମାନଙ୍କର ଆର୍ଥିକ ପ୍ରାଚୁର୍ଯ୍ୟ ଭିତରେ ଶୁଭଙ୍କରର ଦାରିଦ୍ର୍ୟ ନାଇଲନ୍ ଜାଲ ଭିତରେ ମାଛର ଯୌବନ ପରି ଲାଗୁଛି । ଶୁଭଙ୍କର ହ୍ୟାଣ୍ଡସେକ୍ କରି ପକାଉଛି । କେହି ବାଳିକା ଭଦ୍ରମହିଳା ତା' ଗାଲରେ ଚୁମାକରି ପକାଉଛନ୍ତି ଓ ଶୁଭଙ୍କର ଲାଜରେ ଲାଲ ପଡ଼ିଯାଉଛି — ନା, ଲାଲ ପଡୁନାହିଁ; କାରଣ ସେ ଏତେ କଳା ହୋଇଗଲାଣି ଯେ, ଆଉ ଲାଲ ହେବା ତା' ପକ୍ଷେ ସମ୍ଭବ ନୁହେଁ । ମୁଁ ଓ ମୋ ସ୍ୱାମୀ ହାତ ଧରାଧରି ହୋଇ ପାହାଚ ଚଢ଼ିଲୁ । ସ୍ୱାମୀ ଧଳା ଫିନ୍‌ଫିନ୍ ପାଇଜାମା ପଞ୍ଜାବି ପିନ୍ଧିଛନ୍ତି ଫିନ୍‌ଫିନ୍, କାରଣ ରାତିରେ ଶୋଇଲାବେଳେ ସେ ଉଦ୍‌ଲିଆ ପାଲଟି ଯାଉଥିଲେ । ଦାଣ୍ଡପଟ ବାଲ୍‌କୋନିରେ ମୁଁ ଶୁଭଙ୍କରକୁ ନିଃସଙ୍ଗରେ ବାହାରି ଯାଉଥିବାର ଦେଖୁଛି । ତା' ଚାରିପଟେ କାଲି ଗାଡ଼ିରେ ହୋ' ହା' କରୁଥିବା ଟୁରିଷ୍ଟମାନେ ନାହାନ୍ତି । ସେମାନେ କେହି ରହିବେ ନାହିଁ ବୋଲି କ'ଣ ଶୁଭଙ୍କର ଜାଣି ନ ଥିଲା ?

ପ୍ରଥମେ ସାନ ସାନ କ୍ରୋଟନ୍ ଗୋଲାପ, ପରେ ରଜନୀ ଓ କାଗଜଫୁଲ ଓ ଶେଷରେ ନଡ଼ିଆ, ଆକାଶିଆ, ଦେବଦାରୁ ପତ୍ରଙ୍କ ଗହଣରେ ଶୁଭଙ୍କର ଧୀରେ, ଧୀରେ; କିନ୍ତୁ ନିଶ୍ଚିତ୍, ନିଶ୍ଚିତ୍ ଅଦୃଶ୍ୟ ହୋଇଯାଉଛନ୍ତି । ସମ୍ଭ୍ରାନ୍ତ ଭୟଙ୍କର ଇସ୍ପାତ୍ର ଦ୍ୱାର ମୋ ମୁହଁ ଉପରେ ଧମ୍କିନା ବନ୍ଦ । ଅଭିମାନର ଅବୋଧ ଓ ବାଧ ବାଧିତ ଆଦେଶରେ ମୁଁ ଶୁଭଙ୍କର ଆଡ଼କୁ ଅନାଉନି । ସତେ କି ନୀରବରେ ସ୍ୱଚ୍ଛନ୍ଦରେ, ଜଣାପଡ଼ିବା ପୂର୍ବରୁ ହିଁ ସେ ମୋ ହୃତ୍ପିଣ୍ଡ ଅପହରଣ କରିନେଲେ । ମୁଁ ନିଛୁଟିଆ । ଏପରିକି ମୋ ଦୁଃଖ ମୋତେ ଛାଡ଼ି ଚାଲିଗଲା ।

ରାଜକୁମାର ନିର୍ବାସିତ ହୋଇଗଲା । ଅମ୍ଳଜାନ ଅଭାବରେ ବେଲ୍ଜାର ଭିତରର ନିଆଁ ଲିଭିଗଲା । ପୃଥିବୀସାରା ଶୁଭ୍ର ପବିତ୍ର ଖରାରେ ଚକ୍ ଚକ୍ କରୁଥିବା ସଣ୍ଟା ଟଗର, ହେନା ଓ କଦମ୍ବ ଫୁଲଙ୍କ ଲହରି । ମେଘଟିଏ ଉଡ଼ିଆସି ପକ୍ଷ ଝାଡ଼ିଦେଲା, କିନ୍ତୁ ପାପ ଝାଡ଼ି ଦେଲା । ଶୁଭଙ୍କର ବର୍ଷାକୁ ଖାତିର କରେ ନାହିଁ । ଝଡ଼କୁ ଡରେ ନାହିଁ । ଏଇମିତି ସେ ଚାଲିଥିବ । ସଦ୍ୟ ବିବାହିତ ସ୍ୱାମୀମାନେ ଛମାସର ଶିଶୁ ଓ ଯୁବତୀ ବଧୂଙ୍କୁ ଛାଡ଼ିଦେଇ ସଡ଼କ ଦୁର୍ଘଟଣାରେ ମରି ଯାଉଥିବେ । ସୂର୍ଯ୍ୟ ପୂର୍ବପରି ପୂର୍ବଦିଗରୁ ଉଦିତ ହେଉଥିବେ । ଜ୍ୟୋତିଷେ କୋଷ୍ଠୀ ଦେଖି ଭବିଷ୍ୟତ କହି ପକାଉଥିବେ, ରଜସ୍ୱଳା ଯୁବତୀଏ ହଳଦିଆ ଖବର କାଗଜର ବିଜ୍ଞାପନ ଦେଖି ସାନିଟାରୀ ଟାୱେଲ କିଣି ନେବେ । ଶୁଭଙ୍କର ଏଇ ଟୁରିଷ୍ଟ ବଙ୍ଗଳାକୁ ଦିନେ ଛଡ଼ା ଦିନେ ଆସୁଥିବ । ଦି'ଟି ଡବଲ ପେଗ୍ ହ୍ୱିସ୍କି ପାଇଁ ଏମିତିକି ପୃଥିବୀର ସବୁଠୁ କଦର୍ଯ୍ୟ ଲୋକର ଚିତ୍ର ଅଙ୍କି ଦେଉଥିବ ଓ ଅକାରଣେ ପଚିଶ ବର୍ଷ ବୟସ୍କା ଅବିବାହିତା ଆମେରିକାନ୍ ଭଦ୍ରମହିଳାକୁ ପହଁରି ପହଁରି ଓଲଟି ଯାଉଥିବା ଡଙ୍ଗା କୂଳରୁ ଉଦ୍ଧାର କରି ଆଣୁଥିବ ।

ମୋ ଜୀବନର କୋଉଠି, କୋଉ ଗୋଟେ କୋଣରେ ଘୋର ନିଛୁଟିଆ ଅନ୍ଧାର ହୋଇଯାଇଥିବ । ଠିକ୍ ବ୍ଲାକ୍ ହୋଲ୍ଟିଏ, ଯହିଁ ଯେତେ ବି ଆଲୁଅ ପକେଇଲେ ଆଲୁଅ ଫେରିବନି; ଅନ୍ଧାର ଥିବ । ତମେ ଯଦି ଲୋକପ୍ରିୟ ଉପନ୍ୟାସର ମାପକାଠି ଅନୁଯାୟୀ ମୋତେ ଅସତୀ ଭାବୁଥାଅ, ତା'ହେଲେ ମୋ ସ୍ୱାମୀଙ୍କୁ କହିବ ନୂଆ ନାଇଲନ ଶାଢ଼ୀ କିଣି ଆଣିବେ, ମୋତେ ପିନ୍ଧିବାକୁ କହିବେ, ଚଟ୍କଣା କିରୋସିନ ଗ୍ୟାଲନଟା ଢାଳି ଦେଇ ଦିଆସିଲି ମାରିଦେବେ । ମୋର ଯେ ଆଦର୍ଶ ହିନ୍ଦୁ ପତିଧର୍ମୀ ସାବିତ୍ରୀ ପତ୍ନୀ ହେବାର ଯୋଗ୍ୟତା ନାହିଁ, ସେ କଥା କ'ଣ ଖୋଲିଖୋଲି କହିଦେବା ଦରକାର ?

ଆଉଥରେ ଉପର ମହଲାରୁ ତଳକୁ ଓହ୍ଲେଇ ଆସିବି ବୋଲି ଭାବିଲି । ଓଢ଼ଣୀ ଉଠେଇ ନେଲି । ଶୁଭଙ୍କର ଆସ୍ତେ ଆସ୍ତେ ଅଦୃଶ୍ୟ ହୋଇଯାଉଛନ୍ତି । ଏକ

ସମସ୍ତରେ ମୁଁ ତାକୁ କ'ଣ ଗୋଟେ କହିବାର ଥିଲା, ଯାହା କହିପାରିଲି ନାହିଁ ଓ ଶୁଭଙ୍କରକୁ ଗୁଳି ମାରିଦେଇ ତା' ପାପକୁ କୌଣସିମତେ ନିଜେ ବୋହି ନେବି; କିନ୍ତୁ ଏଇ ଗୁଳି ମାରିବା ସଙ୍ଗେ ପାପ ବୋହି ନେବାର କ'ଣ ସମ୍ପର୍କ ମୁଁ ଜାଣେ ନାହିଁ । ନାଁ କିଛି କଲି ନାହିଁ । ଟା' ଟା' କରିବାକୁ ହାତ ଉଠେଇଲାବେଳେ ମୋ ସ୍ୱାମୀ ତଳୁ ଉଠି ଆସୁଥିଲେ । ମୁଁ ଓଢ଼ଣା ଭିତରେ ହାତ ପୂରେଇ କେଶ ସଜାଡ଼ି ନେଲି ।

ସ୍ୱାମୀ-ସ୍ତ୍ରୀ ପରସ୍ପର ବାଲ୍‌କୋନିକୁ ଆସିଲୁ । ଝରି ବୋଧେ ଗୁଡ଼ୁମ୍ପି ପାଇଁ ଟଙ୍କା ପିଠିରେ ଚକ୍ ଚକ୍ ଧଳା, ନୀଳ, ମଇଳା-ସବୁଜ, ଦୁଃଖ-ହଳଦିଆ, ଏଇମିତି ଗୁରେଟି ରଙ୍ଗରେ ବାଣ୍ଟି ହୋଇ ଯାଉଥାଏ । ପରସ୍ପରୁ, ଟଙ୍କାରେ ଝୁହିଲୁଥିବା ଲଞ୍ଚଟି ଅଂଗପରି ଅସ୍ଥିର ହୋଇ ଝୁହିଲୁଛୁ, ସତେକି କୁଆଡ଼େ ବୋଲେ କୁଆଡ଼େ ଗୁଲିଯାନ୍ତା; ହେଲେ ଲଂଗର ଥିଲେ, ଯିବା ହିଁ ଅସମ୍ଭବ ।



ମୁଁ ଏଠି ନାହିଁ । ଆଉ କୋଉଠି । ଆଉ କୋଉଠି । ଆଉ କୋଉଠି ?

କାଲି ରାଜେନ୍ଦ୍ରବାବୁ କହୁଥିଲେ, ସ୍ୱାଧୀନତା ଯେ ହରେଇ ଦିଏ ଥରେ, ସେ ସବୁଦିନ ପାଇଁ ହରେଇ ଦିଏ । ଭାବ ନାହିଁ, ତମ ସ୍ୱାଧୀନତା ତମେ ଆଉ ଫେରସ୍ତ ପାଇବ । ସ୍ୱାଧୀନତା ପାଇଁ ଲଢ଼ିବାକୁ ହେବ, କାରଣ ସ୍ୱାଧୀନତା ବିନା କଳା ସମ୍ଭବ ନୁହେଁ ।

ମୁଁ କହିଲି, ମଦ୍ରୁଅଙ୍କର ଶେଷ ଆଶା ସାହିତ୍ୟ । (ଓ ସ୍ୱାଧୀନତା) ହରବାବୁ ହସିଥିଲେ । ରାଜେନ୍ଦ୍ରବାବୁ ଗାମ୍ଭୀର୍ଯ୍ୟରୁ ତଳକୁ ଖସିଲେ ନାହିଁ । ସିଂହାସନରୁ ଓହ୍ଲାଇ ନଥିଲେ ।

ହରବାବୁ କହୁଥିଲେ, ସ୍ତ୍ରୀଲୋକେ ପନ୍ଦର ବର୍ଷରେ ଜନ୍ମ ହେବା ଉଚିତ ଓ ଛତିଶ ବର୍ଷରେ ମରିଯିବା ଉଚିତ । କାରଣ ଏ ବୟସରେ ହିଁ ସେମାନେ ପ୍ରେମ କରି ପାରନ୍ତି । ଏ ବୟସର ବନ୍ଧନୀ ଭିତରେ ସେମାନେ ସ୍ୱାର୍ଥପର । ବନ୍ଧନୀ ସ୍ନେହ ବି ଗୋଟେ । ସାହିତ୍ୟ ଖଣ୍ଡି ବି ଗୋଟେ ବନ୍ଧନ । ଜଣେ ସିଂହାସନରେ ବସିଛି ତ, ଆଉ ଜଣେ ରାସ୍ତାରେ ଲଙ୍ଗଳା ହୋଇ ବୁଲୁଛି ।

ସିଂହାସନରେ ବସିଥିବା ଲୋକଟି ଭାବୁଛି; ମୁଁ ରାଜା, ତେଣୁ ମୁଁ ସ୍ୱାଧୀନ ।

ରାସ୍ତାରେ ଲଙ୍ଗଳା ହୋଇ ବୁଲୁଥିବା ଲୋକଟି ଭାବୁଛି; ମୁଁ ସ୍ୱାଧୀନ, ତେଣୁ ମୁଁ ଲଙ୍ଗଳା ହୋଇ ରାସ୍ତାରେ ବୁଲିପାରୁଛି ।

ସ୍ନେହ ବି ଗୋଟେ ବନ୍ଧନୀ । ସ୍ୱାଧୀନତା ଧାରଣାର ବନ୍ଧନୀ ।

ବନ୍ଧନ ବିନା ଜୀବନ କାହିଁ ? ମୁକ୍ତି ବି ଗୋଟେ ବନ୍ଧନ । ସ୍ୱାଧୀନ ହେବାର ଅର୍ଥ ଗୋଟିଏ ବନ୍ଧନୀରୁ ଆଉ ଗୋଟେ ବନ୍ଧନୀକୁ ଡେଇଁ ପଡ଼ିବା ।

ହେଲେ ଜୀବନ ଏଠି ନାହିଁ । ଆଉ କୋଉଠି । ଏ ବନ୍ଧନୀରେ ନୁହେଁ, ଆଉ କୋଉ ବନ୍ଧନୀରେ ।

ଏମିତି ଭାବୁ ଭାବୁ ଦେଖୁଚି, ଫାଇଲ ଆଉଉଛି, ଫାଇଲ୍‌ରୁ ଜଣାପଡ଼ୁଛି ଝାପ୍‌ସା ଗୋଟେ କ'ଣ ମିଟିଂ ଅଛି, ମିଟିଂରେ ଆଜି ନିଶ୍ଚୟ ଗଳି ହେବ ।

ଆମ ସହରର କହିଲେ ଯାହା ବୁଝାଯାଏ, ମୁଁ ସେ ସହରର ପାଖ ବାହାରେ ରହେ କହିଲେ ଚଳେ । ସହରକୁ ଆସିବାକୁ ପ୍ରାୟ ପନ୍ଦର ମିନିଟ୍ ଲାଗେ, ସେଠୁ ସହର ଭିତରେ, ମୋ ଅଫିସକୁ ଆସିବାକୁ ଆଉ ପନ୍ଦର ମିନିଟ୍ ।

ଗୋଳମାଳଟି ପ୍ରଥମ ପନ୍ଦର ମିନିଟରେ ହିଁ ଘଟିଥାଇପାରେ ବୋଲି ଅନ୍ଦାଜ କରାଯାଇପାରେ ।

ଏବେ ଲେଖିବାକୁ ବସି ଭାବୁଛି, କାହିଁକି ଏ ଗୋଳମାଳରେ ପଶିଲି । ଏକରେ ଏଇଟା ଘଟଣା ହିଁ ହୋଇ ନ ପାରେ । କୋଉଟା ସତ, କୋଉଟା ସ୍ୱପ୍ନ ପରିଷ୍କାର କହିହେବ ନାହିଁ । କୋଉଟା ଅନ୍ଦାଜ, କୋଉଟା ଘଟିଥିବା ଘଟଣା, କୋଉଟା ମନର ଭ୍ରମ, କୋଉଟା ଦିବାସ୍ୱପ୍ନ । ଏବେ ଆଉ ବାରିବା ସମ୍ଭବ ନୁହେଁ ।

ଖାଲି ସେ କହିଲା ବୋଲି ଲେଖୁଛି ।

ସେଇ ପ୍ରଥମ ପନ୍ଦର ମିନିଟ୍‌ର ଗୋଳମାଳିଆ ଅବସ୍ଥାରେ ହିଁ ତାକୁ ଆବିଷ୍କାର କଲି । ମୋ ସାମ୍ନାରେ । ମୁଁ ଚମକି ପଡ଼ିଲି । ମୋର କାଳିଆ ଭୁଷୁଣ୍ଡା, କାର୍ବନ୍ ପେପର ପରି ମୁହଁବାଲା ଡ୍ରାଇଭର, ଯାହା ସହିତ ସମ୍ପର୍କ ସ୍ଥାପନ କରିବା ଅସମ୍ଭବ, ତାକୁ ମଜାକଥା କହିଲେ ସେ ହସେ ନାହିଁ, ରାଗିଲେ ତା'ର ଭାବାନ୍ତର ହୁଏ ନାହିଁ, ତାକୁ ଦେଖିବାକୁ ବିକଳ ହେଲି ।

କାରଣ ସେ ନ ଥିଲା । ଆଗରେ ଡ୍ରାଇଭର ସିଟ୍‌ରେ କିଏଜଣେ ବସିଥିଲା ଓ ମୁଁ ଡରିଗଲି ।

ସେ ଧଳା ରଙ୍ଗର ଲୁଗା ପିନ୍ଧିଥିଲା, ଧଳା ଟୋପା ନାଇଥିଲା, ଧଳା ରିବନ ମୁକୁଟ ପରି ପିନ୍ଧିଥିଲା; କହିଲା, ହେ ଜହ୍ନ ଖୋଜୁଥିବା ନିଦ୍‌ଖୋର୍ ରାଜା ! ସାମାଜିକତାର ଊର୍ଦ୍ଧ୍ୱରେ, ଆତ୍ମାରେ ଆତ୍ମାରେ, ତମ ସାଙ୍ଗେ ସମ୍ପର୍କ ପ୍ରତିଷ୍ଠା କରିଯାଇ ପାରେ କି ନା ?

ମୁଁ ଡରିଗଲି । କିଛି କହିଲି ନାହିଁ ।

ସେ କହିଲା, ତମେ ଜହ୍ନ ଖୋଜୁଚ, ମୁଁ ବି । ଅବଶ୍ୟ ତମପରି ମୁଁ ପୂର୍ଣ୍ଣିମୀର ଜହ୍ନ ଖୋଜୁନାହିଁ । ଦ୍ୱିତୀୟାର ଜହ୍ନ ମୁଁ ଖୋଜୁଛି, ନରମ କମନୀୟ ।

ମୋ ହାତରେ ଫାଇଲ୍, ମୁଁ ଫାଇଲ୍‌କୁ ଦେଖୁଛି ଓ ତାକୁ । ଆଜି ନିଶ୍ଚୟ ଗାଳି ହେବ ।

ସତେକି ସେ ମୋ ଦ୍ୱନ୍ଦ୍ୱ ଓ ଭୟ ଅନ୍ଦାଜ କରିଗଲା, କହିଲା, 'ବୁଦ୍ଧୁ ! ଫାଇଲ୍‌ରେ ମୁଣ୍ଡ ଖରାପ କରୁଚ ? କ'ଣ ମିଳିବ ଏଥିରୁ ? ଆଜି ବଦଳି ହୋଇଗଲେ, କାଲିକି ଦି' ଦିନ । ତମର ତ ବଦଳି ବହୁତ ହୁଏ । ବେଶି ବେଶି ଲେଖ, ଲେଖା ବାହାରୁ, ସବୁଥିରେ ଠିକଣା ଦିଅ, ଅନ୍ତତଃ ତମକୁ ଖୋଜି ପାଇବାରେ ଅସୁବିଧା ହେବ ନାହିଁ ।'

ମୁଁ ଏଥର ଫାଇଲ୍ ଛାଡ଼ି, ମୋ ଜୋତାକୁ ଦେଖୁଛି । ଜୋତାରୁ ରଙ୍ଗ ଛାଡ଼ି ଗଲାଣି । ଫାଟି ଫାଟି ଗଲାଣି । ମୁଁ କହିଲି, "ଓଃ ଶୋଷ ।"

ସେ କହିଲା, "ହେ ସ୍ୱପ୍ନଭୁକ୍ ସମ୍ରାଟ ! ସ୍ୱପ୍ନକୁ ସ୍ୱୀକାର ନ କଲେ ଚିରନ୍ତନ ତୃଷାର୍ତ୍ତ ରହିଯିବ ।"

ଏଥର ମୋର ସାହସ ମୁଁ ଫେରପାଇଲି । ସାହସ ମୋର ଗୋଟିଏ କଥାରେ : ବ୍ୟଙ୍ଗ କରିବାରେ । ସେଇ ବ୍ୟଙ୍ଗ କରିବାର ସାହସ ଫେରି ପାଇ କହିଲି, "ଘର ତ ସାଙ୍ଗ ପରି କଥା କହୁଚ ? ସେ ପୁଣି ଘର କଡ଼ା କଡ଼ା ଭାଷାରେ, ଘର ବଡ଼ ପେଡ୍‌ଷ୍ଟାଲ୍ ଉପରୁ ଠିଆହେଇ ? ମାନେ ଦଣ୍ଡାୟମାନ ହେଇ ?"

କି ଆଶ୍ଚର୍ଯ୍ୟ !

ବାହାରେ ରାସ୍ତା ଘର ନ ଥିଲା, କି ସାଇକେଲ, କାର, ଜିପ୍, ମୋଟର-ସାଇକେଲ ସ୍କୁଟରରେ ଭରତର ହୋଇ ଲୋକେ ଅଫିସ ଯାଉ ନ ଥିଲେ ।

ଖାଲି ଆକାଶ ଥିଲା, ମେଘ ଥିଲା; ଦୂରରେ ନାରଙ୍ଗୀ ରଙ୍ଗର ଚକ୍ରବାଳରୁ ସୂର୍ଯ୍ୟ ଉଠି ଆସୁଥିଲେ ।

ସୂର୍ଯ୍ୟ ଯେଉଁଠୁ ଉଠି ଆସୁଥିଲେ, ସେଠି ନାରଙ୍ଗୀ ରଙ୍ଗର ପ୍ରାସାଦ ଥିଲା ।

ଆମେ ଗୋଟେ ଜେଟ୍ ଉଡ଼ାଜାହାଜରେ ଉଡ଼ୁଥିଲୁ ।

ଜଣେ ପୁରୁଷ ଓ ଜଣେ ନାରୀ ଯଦି ଏକାଟିଆ ଗୋଟେ ଦୁଇଜଣିଆ ଉଡ଼ାଜାହାଜରେ ଉଡ଼ିଯିବେ, ତା'ହେଲେ କ'ଣ ହେବ ?

ରାଜେନ୍ଦ୍ରବାବୁ କହୁଥିଲେ, ଆକାଶରେ ଆକ୍‌ସିଡେଣ୍ଟ୍ ହିଁ ହେବ । ଉଡ଼ାଜାହାଜ ଆଉ ପୃଥିବୀକୁ ଫେରିବା ସମ୍ଭବ ନୁହେଁ ।

ହେଲେ ମୋର ଅଫିସ ? ମିଟିଂ ଥିଲା, ଗଲିନାହିଁ, ଗାଳି ଖାଇବି । ବଜାର ସଉଦା କରିବାର ଥିଲା, କରିନାହିଁ, ଘରେ ବି ଫେରି ଗାଳି ଖାଇବି । ଗାଁରୁ ଗୋଟେ କାମ ପାଇଁ ଦାଦାଙ୍କର ବରାଦ ଥିଲା, ସେଇଟା ନ କଲେ ବି ଗାଳି ଖାଇବି ।

ସେ କହିଲା, ଆଉ ପୃଥିବୀକୁ ଫେରିହେବ ନାହିଁ । ହସିଦେଲା, ଶୁଭ୍ର ହସ ।

ସେତିକିବେଳେ ତା' ପାଖେ ମୁଁ ଗୋଟେ କୁକୁରକୁ ଦେଖିଲି, ରୋଗିଣା ଘାଉଡ଼ା କୁକୁରଟାଏ । ଏହେଃ ହେଃ, ଏଇଟା କୋଉଠୁ ଆସିଲା, ମୁଁ ଚମକପଡ଼ି କହିଲି ।

ତାକୁ ଖରାପ ଲାଗୁଥିଲା ନିଶ୍ଚୟ । କୁକୁର ବି ବୋଧେ ମୋ' କଥା ବୁଝିଗଲା କି କ'ଣ ମୁହଁ ଲୁଚେଇଦେଲା ।

ଝିଅଟି ଫେରାଇଦେବା ପରେ, କ୍ଷମା ମାଗିବା ପରେ ସେଇ କହିଲା, 'ଏଇଟା ପିଲାଦିନୁ ମୋ' ପାଖେ ଅଛି । ପିଲାବେଳେ ସୁନ୍ଦର ଥିଲା, ଏବେ ବୁଢ଼ା ହୋଇଗଲାଣି, ବୋଧେ ଆଉ ବେଶୀଦିନ ବଞ୍ଚିବ ନାହିଁ ।'

ସେଦିନକବେଳେ ଉଡ଼ାଜାହାଜ ଦୁର୍ଘଟଣା ହେଲା ।

ସେ ମୋ ହାତ ଧରିଲା । ଦୁର୍ଘଟଣାକୁ ଯାଉଥିବା ଉଡ଼ାଜାହାଜରୁ ମୋ' ହାତ ଟାଣି ବାହାରକୁ ନେଇ ଆସିଲା ।

ତା' କୁକୁରକୁ ସେ ଡାକିଲା, କୁକୁର ଆସିଲା ନାହିଁ, ଯାଂକୁଡ଼େଇ ଭଙ୍ଗା ଥିବା ଉଡ଼ାଜାହାଜ ଭିତରକୁ ଲିଭିକୁ ପଶିଗଲା ।

ଅନେ ବଟେଇ ପରେ ଦେହଅସି ଭୂଇଁରେ ପହଞ୍ଚିଲୁ । ଲୋକେ ଅଫିସରୁ ଦୋକାନରୁ କାମରୁ ଫେରୁଥିଲେ ।

ସେ କହିଲା, ମୁଁ ଯାଉଛି ।

ମୁଁ ପଚାରିଲି, କେବେ ଆସିବ ? ସେ ଶୁଣିଲା ନାହିଁ ।

ସେ କହିଲା, ଜୁଲାଇରେ ।

ମୁଁ କହିଲି, ଜୁଲାଇରେ ଯଦି ଧର ମୁଁ ମରିଯାଇଥିବି ? ଏତେ ବର୍ଷାରେ, ଦୁଃଖରେ, ଦିନ୍ ଦିନ୍ ଯଦି ମୁଁ ମରିଯାଇଥିବି ?

ସେ ମୋ' କଥା ଶୁଣିପାରୁ ନଥିଲା, ଯଦିଓ ମୁଁ ତା' କଥା ଶୁଣିପାରୁଥିଲି ।

ବୋଧେ ତା' ଦୁଇ କାନରେ ଦୁଇଟା ଭଅଁର କୋରସ୍‌ରେ ଗୀତ ଗାଉଥିଲେ ।

ମୁଁ କହିଲି, 'ତମେ କିଏ ?'

ସେ କହିଲା, 'ମୋର କୁକୁର ଆଜି ଦୁର୍ଘଟଣାରେ ମରିଗଲା, ସେଇଟା ମୋ ଶୈଶବ ଥିଲା ।'

ତା'ପରେ ସେ ଉଡ଼ିଗଲା ।

ଘରକୁ ଫେରିବା ବାଟରେ ମୁଁ ଗୀତ ଗାଉଥିଲି । ଖାଲି ମୁଁ କାହିଁକି ପ୍ରାଗ ସହର ଗୀତ ଗାଉଥିଲି ।

ସ୍ତ୍ରୀ ରବିବାର କଥା ରଖିଲେ । ସେ ମୋତେ ଅଫିସ୍ ଫୋନ୍ କରିଥିଲେ ପାଇ ନଥିଲେ । ମୋତେ ଯେଉଁ କାମ ଦେଇଥିଲେ ମୁଁ କରି ନଥିଲି । ମଝିରେ

ଫୋନ୍ କରି ସେ ଖାଇଲେଣି କି ନାଁ ସେକଥା ବୁଝି ନଥିଲି । ମୁଁ ଘରକଥା ବୁଝୁନାହିଁ, ସ୍ୱାର୍ଥପର, ନିଜ କଥା ଛଡ଼ା ଆଉ କାହା କଥା ଭାବେ ନାହିଁ, ଏକଥା, ସେ ଲୁଣ ଲଙ୍କା ମିଶେଇ ଆଉ ଥରେ ମନେପକେଇ ଦେଲେ ।

କିନ୍ତୁ କି ଆଶ୍ଚର୍ଯ୍ୟ ! ଦବୁଥର ପରି ମୁଁ ରାଗିଲି ନାହିଁ, କି ବିରକ୍ତ ହେଲି ନାହିଁ ।

ଆଗପରି ଗୀତ ଗାଇଲି ।

ହାଗ୍ ଦହର ବି ଗୀତ ଗାଉଥିଲା ।

ଜୀବନ ଗଡ଼ିଗଲିଲା ।

ଡ଼ିଜାଜାହିଜ ଭ୍ରମଣ କଥାଟି କ'ଣ ସେ କଥା ମନେପଡ଼ିଲେ ଅଡୁଆ ଲାଗେ, ଯେମିତି ଧର, ତମ ଘର ଭିତରେ ଗୋଟେ ଅଦ୍ଭୁତ ଜିନିଷ ତମେ ଦେଖିଲ ରାତିରେ, ଲାଇଟ୍ ଜଳେଇଲ, ଦେଖିଲ କିଛି ନାହିଁ, ସେ ଜିନିଷଟି କ'ଣ ତାହା ଜାଣିପାରୁନାହଁ । କିନ୍ତୁ କାହାକୁ କହୁନାହଁ ଲାଜରେ, ଧର, ମନର ଭ୍ରମ ହୋଇଥିବ ।

ଆଉ ଦିନେ ଦନ୍ଧ୍ୟାରେ ।

ମୁଁ ବହୁତ ଥକିଥିଲି । ଏତେ କାମ କରିବା ପରେ, ଏତେ ଫାଇଲ୍ ଦେଖିବା ପରେ ବି, ଯାହା ହେବ ବୋଲି ଭାବିଥିଲି, ହେଇ ନ ଥିଲା, ମୋତେ ଭାରି ରାଗ ଲାଗୁଥିଲା; ମୁଁ ବିଶ୍ୱାସ କରୁଥିବା ଜଣେ ଅଧସ୍ତନ ସେଦିନ ଲାଞ୍ଚ ନେଇ ଥିବାବେଳେ ଧରାପଡ଼ିଥିଲା, ତାକୁ ହାଙ୍ଗେ ହାଙ୍ଗେ ଦଣ୍ଡ ଦେଇ ମୁଁ ପୁଣି ଦୁଃଖୀ ହେଇଗଲି ।

ଲୋକଟିର ଚରିତ୍ର ଭଲ ବୋଲି ଆଜିଯାଏ ଯାହା ମନେ ହେଉଥିଲା, ଆଜି ମନେହେଲା, ସେଇଟା ଆଉ କିଛି, ତା'ର ତୋଷାମୋଦରେ ଯାହା ମୁଁ ଭୀତ ହୋଇ-ଯାଇଥିଲି ।

ଲୋକଟି ଖରାପ୍ ବୋଲି ଜାଣି ବି ଏତେ ଦୁଃଖ ଲାଗୁ ନ ଥିଲା, ଯେତେ ଲାଗୁଥିଲା, ନିଜ ବୋକାମିରେ ।

କୋଉଥିପାଇଁ ନିଜକୁ ଏଡ଼େ ବାହାଦୁର ଲାଗୁଥିଲା ?

ଘରକୁ ଫେରିବା ପରେ ସ୍ତ୍ରୀ କହିଲେ, ତମେ ଛଅଟାବେଳେ ଆସିବ କହିଥିଲ । ଏବେ ସାଢ଼େ ଛଅଟା ହେଲାଣି, ଏବେ କ'ଣ ହେବ, ତମପରି ଲୋକର ହାତ ଯାହା

ଧରିଲି, ତା'ଠୁ ମରିଯାଇଥିଲେ ଭଲ ହେଉଥାଆନ୍ତା । ମୁଁ ରାଗକୁ ଚାପି କହିଲି, (ଆଜି ବହୁତ ଦିନ ପରେ ପ୍ରଥମ ଥର ପାଇଁ ରାଗୁଥିଲି) ଚାଲ ବାହାରକୁ ଯିବା, କୃମିପୋକ ମାରିବାକୁ ଔଷଧ ପିନା ଖାଇବ, ପରମାଣୁ ବୋମା ଖାଇଲେ କ'ଣ ହେବ ? କୃମିପୋକ ତ ମରିବ ନାହିଁ, ତମେ ଯାହା ଫାଟିବ । ଅଭିମାନ ଆଉ ଅଧଘଣ୍ଟା ଚାଲିଲା, ତା'ର ଅଧଘଣ୍ଟା ପରେ ସେ ଶାନ୍ତ ହେଲେ, ତା' ଅଧଘଣ୍ଟା ପରେ ଆମେ ବାହାରିଲୁ । ପୁଅ ମୋତେ ଜାବୋଡ଼ି ଧରିଲା, ଗାଡ଼ି ଚଲେଇବାକୁ ଦେଲା ନାହିଁ ଓ ସ୍ତ୍ରୀ ତାକୁ ଚାପୁଡ଼ାଏ ମାରିଲେ । ମୁଁ ରାଗିଲି, ସ୍ତ୍ରୀଙ୍କୁ କିଛି କହିଲି ନାହିଁ, ରାସ୍ତାରେ ସ୍କୁଟର ଓ ମୋଟର-ସାଇକେଲ ପ୍ରାୟ ସମସ୍ତେ ସତେକି ହସ୍ପିଟାଲ୍‌ରେ ତାଙ୍କ ବାପା ପଡ଼ିଛି ଓ ମରିଯାଉଛି, ସେମିତି ଜୋର୍‌ରେ ନିୟମ କାନୁନ୍ ଭାଙ୍ଗି ଗାଡ଼ି ଚଲାଉଥିଲେ ଓ ମୁଁ ସେମାନଙ୍କୁ ଜଣ ଜଣ କରି ତମ ବାପା ହସ୍ପିଟାଲ୍‌ରେ ପଡ଼ିଚି କି ବୋଲି ପଚାରିଲି ।

ବଜାରରେ କୌଣସି ଜିନିଷ ସ୍ତ୍ରୀଙ୍କର ପସନ୍ଦ ହେଲା ନାହିଁ, ଶାଢ଼ୀ କି ପାନିଆ, ଟୁଥ୍‌ବ୍ରଶ୍ କି କପଡ଼ା ସଫା କରିବା ବ୍ରଶ୍, ସାୟା / ପାଇଜାମା ପାଇଁ ଦଉଡ଼ି କି ଲୁଗା ଶୁଖେଇବା ପାଇଁ କି ଆତ୍ମହତ୍ୟା କରିବା ପାଇଁ ଦଉଡ଼ି ଓ ଏପରି ସଇଁତିରିଶଟି ଦୋକାନ ତୀବ୍ର ଗତିରେ ବୁଲିବା ପରେ ବି ମୁଁ ହସିବାକୁ ଚେଷ୍ଟା କରୁଥିଲି ଓ ସଫଳ ହେଉଥିଲି । "ବୋର୍ ହେଉଛ କି ? ରାଗୁଚ କି ? ଥକ୍କା ଲାଗିଲାଣି କି ?" ଆଦି ପ୍ରଶ୍ନର ଉତ୍ତର ମୁଣ୍ଡ ହଲେଇ ନାହିଁ କରିବା ସତ୍ତ୍ୱେ ମୋର ଅଭିନୟ ନିଶ୍ଚୟ ଯଥେଷ୍ଟ ସଫଳ ହେଉ ନ ଥିଲା । ଏ ଦଉଡ଼ା ଦଉଡ଼ି ଭିତରେ କେତେବେଳେ ପୁଅ ଶୋଇ-ଯାଇଛି ଓ ମୁଁ ଗୋଟେ ଗଳିରେ ପଶିଯାଇଛି ଓ ସ୍ତ୍ରୀ ଆଉ ଗୋଟେ ଗଳିରେ । ମୋ ଗଳି ଅନ୍ଧାରୁଆ, ଅନ୍ଧାରରେ ମୋ ଗୋଡ଼ ପାଣିରେ ପଡ଼ିଗଲା, ପାଣିରୁ ଡିଆଁ ମାରିଲି ଯେ, ଆଉରି ପାଣିରେ ପଡ଼ିଲି, ବ'ପଟ ଦୋକାନ ଘରର କାନ୍ଥପରି ଯାହା ଦିଶୁଥିଲା, ସେଇଟା ପ୍ରକୃତରେ ଦୋକାନ ଘରର କାନ୍ଥ ନ ଥିଲା, ମାଟିର ବାଡ଼ ଥିଲା, ରାସ୍ତା ପ୍ରକୃତରେ ନଈ ଥିଲା, ଆଗରେ ଯାହା ଦୋକାନ ପରି ଦିଶୁଥିଲା, ସେଇଟା ଦୋକାନ ନ ଥିଲା, ନଈରେ ବ୍ଲୋଟ ଡଙ୍ଗାଟିଏ ଥିଲା, ମୁଁ ନଈର ସୁଅରେ ଟାଣିଗଲି, ମୋ କାନ୍ଧରେ କୁନିପୁଅ, କାହାର ଉଷୁମ ନରମ ହାତ ମୋତେ ଉଠେଇ ନିଏ, ଡଙ୍ଗା ଉପରକୁ—

ସେ ।

ସେ ଓ ମୁଁ । ମଝିରେ ପୁଅ ଶୋଇଛି ନିଘୋଡ଼ ନିଦରେ ।

ଝାପ୍‌ସା ଅନ୍ଧାର । ଡଙ୍ଗାରେ ମିଞ୍ଜି ମିଞ୍ଜି ଲଣ୍ଠନର ଆଲୁଅ, ନଈର ଅନ୍ଧାର ଲଣ୍ଠନରେ ସବୁ ଆଲୁଅ ଟାଣି ନେଉଛି ।

'ଅନ୍ଧାର ବହୁତ ଭଲ ଲାଗୁଛି', ସେ କହିଲା ।

ନଈରେ ଡଙ୍ଗା ଆସେ ଭାସିଯାଉଛି । ପାଣିର ଚଳଚଳ ମୁଁ ଶୁଣିଛି । ସେ କ'ଣ ପିନ୍ଧିଛି ମୁଁ ଜାଣିପାରୁ ନାହିଁ । କିନ୍ତୁ କେମିତି ଫଟ୍ କରି ମୁଁ କହିଗଲି ତାକୁ, ସେ ସେ ବୋଲି ?

ସେ କହିଲା, "କ'ଣ କରୁଚ ? ପୁଅ ପରି ନିଶ୍ଚିନ୍ତ କୋଳରେ ଶୋଇଚ ନାଁ କ'ଣ ? ନାଁ ପୃଥିବୀ ଫାଇଲ ଚିନ୍ତା ? ନାଁ କୋଉ ଗପର ପ୍ଲଟ୍ ଖୋଜୁଚ ?"

ମୁଁ କହିଲି, "ବଞ୍ଚିଛି, ବଞ୍ଚିବା ତୁଳନାରେ ଏ ସବୁ କ'ଣ ? ତୁଚ୍ଛ !"

ମୁଁ ତା' କୋଳରେ ମୁହଁ ଭର୍ତ୍ତି କରି ଶୋଇ ପଡ଼ିଲି । ସେ ଋତୁମତୀ ଥିଲା ଓ ମୁଁ ତା' ବାସ୍ନାରେ ପାଗଳ ହୋଇପଡ଼ିଲି ।

ସେ ବ୍ୟସ୍ତ ହୋଇଗଲା, ସତେକି ମୁଁ ଜାଣିଯିବି ସେ ଋତୁମତୀ ଅଛି ଓ କହିଲା, "ତମକୁ ଦେଖିବାକୁ ବହୁତ ଇଚ୍ଛା ହଉଛି, ଥରେ ମୁହଁ ଉଠାଅନା ।"

ମୁଁ କହିଲି, "କାହାକୁ ଦେଖିବ ? ମୋର ଆଉ ଗୋଟେ ମୁହଁ ଅଛି । ଏଠି ଅନ୍ଧାର ନ ଥାଇ ଆଲୁଅ ଥିଲେ ବି, ତମ କୋଳରେ ମୁହଁ ଗୁଞ୍ଜି ନ ଥିଲେ ବି ତମେ ସେ ମୁହଁ ଦେଖିପାରି ନ ଥାନ୍ତ । ଏବେ ଯେଉଁ ମୁହଁ ମୋର ତମେ ଦେଖିବ, ସେଇଟା ମୋର ନିଜର ମୁହଁ ନୁହଁ, ସେଇଟା ମୋର ଉତ୍ତେଜିତ ଅବସ୍ଥାର ମୁହଁ । ଉତ୍ତେଜିତ ହେବାର ଅବସ୍ଥା କ୍ଷଣସ୍ଥାୟୀ । ଅଳ୍ପ ସମୟ ପାଇଁ ଆସେ ଓ ଚାଲିଯାଏ । ଏବେର ମୁହଁଟି ମୋର ପ୍ରାୟ ମୁଖା ପରି—କ୍ଷଣସ୍ଥାୟୀ । ଯୌନ । ମୋର ଆର ମୁହଁଟି ଅବଶ୍ୟ ତମେ କଦାପି ଦେଖିବ ନାହିଁ, କାରଣ ଉତ୍ତେଜିତ ନ ହେଲେ, ତମ ସାଙ୍ଗେ ଭେଟ ହେବ ହିଁ ନାହିଁ, ମୋର ପ୍ରକୃତ ମୁହଁଟି ତେଣୁ ତମେ କେମିତି ଦେଖିବ ?"

ତମେ ମୋର ମୁହଁ (ମୋର ଦୁଇ ନମ୍ବର ମୁହଁ) ହାତରେ ନେଲ, ଓଠରେ ଚୋଇ ଦେଲ । ବହୁତ ସମୟ ଧରି । ତମେ ଶେଷ କରିସାରିବା ବେଳକୁ, ଡଙ୍ଗା ଆଲୁଅକୁ ଆସିଯାଇଥିଲା ।

ତମେ ମୋ ଆଡ଼େ ଅନେଇଲ ନାହିଁ, ସତେ କି ଭୟରେ । ସତେ କି ଆଲୁଅରେ ମୋର ସତ ମୁହଁ ଦିଶିଯିବ ।

ମୁଁ କହିଲି, "ଡରନାହିଁ, ମୋର ସତ ମୁହଁ ତମେ କଦାପି ଦେଖିବ ନାହିଁ ।"

ତମେ ଗୃହିଗଲ । ସତେ କି ପ୍ରେରକର ନାଁ କି ଠିକଣା ନ ଥିବା ଚିଠିଟିଏ ହୋଇ ଆସିଲ, ଉତ୍ତର ମାଗିଲ, କିନ୍ତୁ ଉତ୍ତର ଦେବା ପାଇଁ ବାଟ ରଖିଲ ନାହିଁ; ସତେ କି ଅକସ୍ମାତ୍ ହ୍ୱାଭୁଜାଏ ପବନ ଦେଇ ଆସିଲ, ମୋତେ ଗେଲ କରିଦେଇ କହିଲ, ମୋତେ ଛୁଁ, ମୋତେ ଛୁଁ ଓ ଅନ୍ୟାନ୍ୟ ଇତର ପବନରେ ମିଶିଗଲ । ସତେ କି ଶୀତର ବର୍ଷାରେ ସକାଳର ଇନ୍ଦ୍ରଧନୁ ପରି, ଏଇଠି ଥାଅ, ଟିକେ ବାଙ୍କିଗଲେ, ଝାଙ୍କିଗଲେ, ନ ଥାଅ ।

ଜୀବନ ଏଠି ନାହିଁ । ମୁଁ ଏଠି ନାହିଁ । ଆଉ କୋଉଠି; ଆଉ କୋଉଠି ।

ତମେ ସେ ଜୀବନର ଗୃହକାଠି ଗ୍ରହରେଇ ନେଇ କ'ଣ ସୁଖ ପାଉଛ ଯେ ? କାହିଁକି ମୋତେ ବ୍ୟସ୍ତ କରୁଛ ଯେ ?

ଆସ ଥରଟିଏ ଆସ ।

କାରଣ ଜୀବନ ଏଠି ନାହିଁ, ଆଉ କୋଉଠି ।



# ସାଧବପୁଅ

ବସ୍‌ଷ୍ଟାଣ୍ଡରେ ବି କାହାକୁ ନଥିବାର ଦେଖି ପରୀକ୍ଷିତ ହତାଶିଆ ଅନୁଭବ କଲା । ହାୱଡ଼ା ଷ୍ଟେସନ୍‌ରେ ସେ ଯେତେବେଳେ ଗାଁ ଗାଡ଼ି ସାଢ଼େ ଦଶଟାରେ ଚଢ଼ିଲା ( ଯଦିଓ ସେ କଲିକତାରୁ ଗାଁକୁ ଯା'ଭିତରେ ସବୁମୋଟ ୩୦ କି ୪୦ଥର ଆସିଲାଣି, ତଥାପି ତା'ର ଟ୍ରେନ୍ ଫେଲ୍ ହୋଇ ଯିବାକୁ ସବୁବେଳେ ଅନେକ ଭୟ ଥାଏ ଓ ସେଥିପାଇଁ ସେ ଟ୍ରେନଟାଇମ୍ ସବୁବେଳେ କମେଇକି ଆସେ ଓ ଭାବେ ଯେମିତିକି ସେ ଟ୍ରେନ୍ ଫେଲ୍ ନହେବ । ଟ୍ରେନ୍‌ଟି ପ୍ରକୃତରେ ଏଗାରଟାବେଳେ ହାୱଡ଼ା ଛାଡ଼ିଲା । ) ସେତେବେଳେ ନିଜ ଗାଁ କି ପାଖ ଆଖ ଗାଁର ଦି'ଚାରି ଜଣଙ୍କୁ ଦେଖିବ ବୋଲି ଭାବୁଥିଲା; କିନ୍ତୁ ପ୍ରଥମତଃ ଲୋକମାନେ ଏତେ ଜୋର୍‌ରେ ଏପଟ ସେପଟ ଦୌଡ଼ୁଥିଲେ ଯେ କୌଣସି ଗୋଟେ ଲୋକର ମୁହଁକୁ କ୍ରମାଗତ ଦଶ ସେକେଣ୍ଡ୍ ପାଇଁ ଦେଖିବା ଅସମ୍ଭବ ଥିଲା । ଦ୍ୱିତୀୟତଃ, କୌଣସିମତେ ପେଡ଼ି ପୁଟୁଳା ଓ ସଂସାର ଜଞ୍ଜାଳ ସହ ପ୍ରଥମ ଗୁନ୍‌ଦରେ ଡବା ଭିତରକୁ ପଶିଯିବାକୁ, ପଶିଯାଇ ସିଟ୍‌ଟିଏ ବିଶେଷତଃ ଝର୍କା ପାଖ ସିଟ୍‌ଟିଏ ବା ବର୍ଥଟିଏ କେମିତି ପାଇଯିବେ, ସେଇ ଚିନ୍ତାରେ ସମସ୍ତେ ଉଦ୍‌ଗ୍ରୀବ ଥିବାରୁ ସେମାନଙ୍କ ମୁହଁ ସେତେ ସେମିତି ପ୍ଲାଟଫର୍ମରେ ନଥିଲା । ପରୀକ୍ଷିତ ଗୋଟେ କୁଲିକୁ ପାଞ୍ଚଟଙ୍କା ଦେଇ ସିଟ୍‌ଟିଏ ପାଇବାକୁ କୁଲିର ନିର୍ଦ୍ଦେଶମତେ ଏ. ଏଚ୍. ହୁଇଲରଙ୍କ ବହି ଦୋକାନ ପାଖ, ଯେଉଁଟା ଟିକେ ନିରାପଦ ଥିଲା, ସେଠି ଛିଡ଼ା ହୋଇଥିଲା । ସବୁ ଲୋକଙ୍କୁ ଅନେଇଲା, କିନ୍ତୁ କେହି ଜଣେ ବି ଚିହ୍ନାଲୋକ ଦେଖିଲା ନାହିଁ । ବାଲେଶ୍ୱର ବସ୍‌ଷ୍ଟାଣ୍ଡ୍‌ରେ ଓହ୍ଲାଇବା ପରେ, ଗାଁ ବସ୍‌କୁ ଅପେକ୍ଷା କଲା ସମୟରେ କିମ୍ବା ବସ୍ ଭିତରେ ବି କୌଣସି ଚିହ୍ନାଲୋକ ଦେଖିଲା ନାହିଁ । 'ଗାଁ ବସ୍‌ଷ୍ଟାଣ୍ଡ୍' ଯୋଉଟା, ସତ କହିଲେ, ଗୋଟେ ବରଗଛ ଓ ଗୋଟେ ସଦେଶ୍ୱା କାଳୁଣୀ ବୁଢ଼ୀର ପାନ-ଦୋକାନ ବ୍ୟତୀତ ଆଉ ଅଧିକା କିଛି ନଥିଲା, ସେଠି ବି ପରୀକ୍ଷିତ କାହାରିକୁ ଅପେକ୍ଷା କରୁଥିବାର ଦେଖିଲା ନାହିଁ ଏବଂ ହାୟ, ସେଇ କାଳୁଣୀ ବୁଢ଼ୀଟି ବି ପରୀକ୍ଷିତକୁ କହିଲା, 'କିରେ ପରୀକ୍ଷିତ, କ'ଣ କଲିକତା ବାହାରିଲୁ ?' ସେ ପ୍ରଥମେ ପନ୍ଦର ମିନିଟ୍ ଧୈର୍ଯ୍ୟର ସହ ଅପେକ୍ଷା କଲା ( ହେଇ, ଆସୁଥିବେ ବୋଧେ, ବସ୍

ବୋଧେ ଅଳ୍ପ ଟିକେ 'ବିଫୋର୍ ଟାଇମ୍' ପହଞ୍ଚି ଯାଇଛି ) ତତ୍ପରେ ଆସ୍ତେ ଆସ୍ତେ ଅଧୈର୍ଯ୍ୟ ଓ ତା' ସାଙ୍ଗେ ସାଙ୍ଗେ ନିଜକୁ ପ୍ରବୋଧନା ଦେବାକୁ ଆରମ୍ଭ କଲା '(ରହ ରହ ଏଇଟେ ନ ଅସିଥିବେ କି, ନ ଆସିଥିଲେ ମୁଁ ଚାଲିଯିବନି ? କେତେ ବା ଜିନିଷ, କେତେବା ବାଟ ) ହେଉ ଚାଲିଗଲା ( ଶଳା ମୁଁ ଦିନରାତି କଲିକତାରେ ଖଟୁଚି କା ପାଇଁବେ, ତମ ପାଇଁ ନାଁ ନାଇଁ ? ) ବିମାନବନ୍ଦରରେ ଆଶଂକିତ ହେଲା ( କିବୁ ଭିତରେ ଭାଗ ହୋଇଗଲା କି ? ବାପା' ଖରାପ ଅଛନ୍ତି ? ) ଓ ଶେଷରେ ଛାଡ଼ ନିଜେ ନିଜେ ଚାଲିଯିବା, ବୋଧେ ମୋ ଚିଠି ପାଇନାହାନ୍ତି । ପାଇଥିଲେ ଆଉ କ'ଣ ଆସି ନ ଥାନ୍ତେ ?' କହି ସୁଟ୍‌କେଶ ଓ ବ୍ୟାଗ ଧରି ଗାଁ ଆଡ଼କୁ ଚାଲିଲା । ବାଲେଶ୍ୱର ଷ୍ଟେସନରେ ଓହ୍ଲାଇବା ମାତ୍ରକେ 'ଥଣ୍ଡା ପିଇବା ପାଣି' ବେସିନରେ ମୁହଁ ଧୋଇ, ତେଲ ଲଗେଇ ପାଉଡର କରି ଦେ ମୁଣ୍ଡ କୁଣ୍ଡେଇ ଥିଲା ଓ ଜି. ଆର୍. ପି. ଘର ପଛପଟେ ମଇଳା ଲୁଗା ବଦଳେଇ ସଫା ଇସ୍ତ୍ରୀକରା ଲୁଗା ପିନ୍ଧିଥିଲା; କିନ୍ତୁ ବସ୍‌ରେ ପବନ, ଧୂଳି, ଝାଳ, ଦଳାମକଚାରେ ତା' ବାଳ ଫୁରୁଫୁରୁ ଓ ଲୁଗାପଟା ଲେଦୁକୋଚୁ ହୋଇଯାଇଥିଲା । ସୁଟ୍‌କେଶ ଖୋଲି, ସ୍ତ୍ରୀ ପାଇଁ ଆଣିଥିବା ଅଇନାଟା ଖୋଜୁ ଖୋଜୁ ଦି'ଟା ଖାଲି ବିସ୍କୁଟ ଖୋଳ ପବନରେ ଉଡ଼ି ଚାଲିଗଲା ଓ ପରୀକ୍ଷିତ ଦୌଡ଼ିଯାଇ ତାକୁ ଉଦ୍ଧାର କରୁ କରୁ ପଡ଼ିଗଲେ, ଦୁଇଟି ପୁଣି ଖାଲି ବିସ୍କୁଟ ଖୋଳ ଉଦ୍ଧାର କରିସାରିଲା ବେଳକୁ ସୁଟ୍‌କେଶ ଆଉ ବନ୍ଦ ହେଲାନି । ତା' ପେଣ୍ଟ୍‌ଜାମା ଏତେବେଳକୁ ପୂରାପୂରି ମଇଳା ହୋଇଯାଇଥିଲା । ପରୀକ୍ଷିତ ଆଉଥରେ ପେଣ୍ଟ୍‌ଜାମା ଝାଡ଼ିଲା ଓ ଯଥାସମ୍ଭବ ଇସ୍ତ୍ରୀଦାଗକୁ ନଖଗାରରେ ପୁନର୍ଜୀବିତ କରିବାକୁ ଚେଷ୍ଟା କଲା ।

( ସାଧବପୁଅ ସାତୋଟି ଦ୍ୱୀପରୁ ବଣିଜ ସାରି
ଫେରୁଥିଲା । ତାମ୍ରଲିପ୍ତି ବନ୍ଦରରେ ମଙ୍ଗ ମୋଡ଼ି ମୋଡ଼ି
ସେ ବୋଇତ କୂଳରେ ଲାଗିଥିଲା । ବନ୍ଦରରେ
ଶହ ଶହ ଲୋକ ଅପେକ୍ଷା କରିଥିଲେ । ବୋହୂମାନେ
ଆଳତି ଧରି ସ୍ୱାମୀମାନଙ୍କୁ ବନ୍ଦେଇଲେ । ଚତୁର୍ଦ୍ଦିଗରେ
ଉଚ୍ଚସ୍ୱରରେ ଶଙ୍ଖଧ୍ୱନି, ହୁଳହୁଳି ହର୍ଷରୋଳ । )

ପରୀକ୍ଷିତ ସୁଟ୍‌କେଶ ଓ ବେଗ୍ ଧରି ଗାଁକୁ ବାହାରିଲା । ଦି'ଟା ସାନ ଜିନିଷ ଭାରି ଭାରି ଥିଲା । ପ୍ରଥମେ ମୋ ଲୋକ, ସେ ଫିଡାକରକୁ ଦେଖିଲା ଓ ତାକୁ ବେଗଟା ଟିକେ ଘରଯାକେ ନେଇଯିବେ କି ବୋଲି କହିବାକୁ ଭାବିଲା । କିନ୍ତୁ ଶେଷରେ ତାକୁ ଟିକେ ପାଗଳ ବୋଲି ସ୍ଥିର କଲା । ପରୀକ୍ଷିତକୁ ଅନ୍ୟମନସ୍କ ଅନେଇ ସେତେବେଳେ ଫିଡ଼ାକର ପାଟିରୁ ବାହାରି ପଡ଼ିଲା "ଆରେ

ଫଣିଆ ନାଁ କିଏ ? ଶଃ, ମୁଁ କହୁଚି କିଏ ?" ସେତେବେଳେ ପରୀକ୍ଷିତ କହିଲା, "ଆରେ ଦାଦା କିରେ ?"

"ଆରେ କେତେବେଳେ ଆସିଲୁ ?"

"ଏଇନା ପରା, ଦେଖୁନୁ ସିଧା ଆସୁଚି ହାଇଦରାବାଦରୁ ।" ପରୀକ୍ଷିତ ଅଧା ବଙ୍ଗଳା ମିଶେଇ କହିଲା ।

"ହାଇଦରାବାଦ ବୋଲି ଗୋଟେ ନୂଆ ବସ୍ ଚାକିରି କରେ, ମୁଁ ତ ଆଜି ସିଅଡ଼େ ବିଶେଷ ଯା'ଆସ କରୁନି । ହଉ ହଉ ଯା' ଯା' ।" ଫିଡ଼ାକର କହିଲା ଓ ଯିବାଲା, ଶଳା ପାଟିରେ ଆଉ ଓଳିଆ ପଶୁନି ।

ପରୀକ୍ଷିତ ସେଠୁ ନିଜ ଘର ଭିତରକୁ ଚାଲିଯିବା ପର୍ଯ୍ୟନ୍ତ ଆଉ କେହି ଚିହ୍ନାଲୋକ ତା'ର ଦେଖା ହେଲେ ନାହିଁ । କିନ୍ତୁ ବାଟରେ ବାଣିକଘର ବାରଣ୍ଡାରେ ଛଅ-ସାତ ଲୋକ ବସି, ସେ ଦାନକୃଷ୍ଣ ମୋଚିର ଜୁଆଁଇ କି ହରେକୃଷ୍ଣ ପ୍ରଧାନ ଘରର ନୂଆ ଟ୍ରାକ୍ଟର ଡ୍ରାଇଭର୍ କିମ୍ବା ସେ ଦଳରେ ପରୀକ୍ଷିତ, ସେ ବିଷୟରେ ଗଣ୍ଡେ ନଡ଼ିଆ ବାଜି ମରାମରି ହୋଇଗଲେ । ପରୀକ୍ଷିତ ଏହି ସମୟରେ ସେ ଗାଁକୁ ଆସି ଭୁଲ୍ କଲା, ଗାଁରେ ବୋଧେ ତାକୁ ଆଉ କେହି ପଚାରୁ ନାହାନ୍ତି ବୋଲି ଭାବି ମନଦୁଃଖ କରୁଥିଲା । "ସେ କ'ଣ ଭାବୁଥିଲା କେଜାଣି ? ତା' ପାଇଁ ତୋରଣ ସଜା ହୋଇଥିବ । ହୁଳହୁଳି, ଫୁଲମାଳ ଓ ଚନ୍ଦନ ଅତର ଧରି ଆମେ ତାକୁ ବରଡ଼ା ପତ୍ରର ବିଞ୍ଚଣାରେ ବିଞ୍ଚୁଥାନ୍ତୁ ?" ସେଦିନ ସନ୍ଧ୍ୟାରେ ପରୀକ୍ଷିତର ପ୍ରିୟ ବନ୍ଧୁ ଗୌରହରି ଆଶ୍ଚର୍ଯ୍ୟ ହୋଇ କହିଥିଲା ।

ପରୀକ୍ଷିତ ଘରେ ପହଞ୍ଚିବା ମାତ୍ରକେ ତାକୁ ତା' ବଡ଼ଭାଇଙ୍କର ସାତୋଟି ଛୁଆ, ତା' ନିଜର ଦୁଇଟି ଛୁଆ ଓ ତିନୋଟି ସାନ ଭାଇଭଉଣୀ ଘେରିଗଲେ ଓ ଅବିଳମ୍ବେ ସୁଟକେଶ୍‌ର ହାରମନିକା, ମୋଣ୍ଡା, ମାଣିକ୍ୟ, ଦେଖିବାକୁ ଚାହିଁଲେ । ପରୀକ୍ଷିତର ସ୍ତ୍ରୀ ମନେ ମନେ ଗାଳି ଦେବାକୁ ଆରମ୍ଭ କରିଥିଲା ଯେ, "ଏତେଟିଏ ହେଲାଣି, ଏତିକି ବୁଦ୍ଧି ନାହିଁ ସିଧା ଶୋଇବା ଘର ଭିତରକୁ ପଶି ଆସିବାକୁ, ଏଇନେ ସବୁତକ ଗଲାନା ! ତେଣୁ ସେ "ରୁହ ରୁହ ପିଲାମାନେ, ସେ ପରା ଏଇନେ ଆସିଲେ, ଏ କଠଉ, ଏ ବିତଣ୍ଡା, ତାଙ୍କୁ ଟିକେ ଗୁଡ଼, ଓହୋ, ଏଗୁଡ଼ାକ କ'ଣ ହେଉଚନ୍ତି" ଇତ୍ୟାଦି କହି ପରୀକ୍ଷିତକୁ ଉଦ୍ଧାର କରିବାକୁ ଯୋଜନା କରିବା ସମୟରେ ପରୀକ୍ଷିତର ମା' ବାହାର ବାହୁଟି ପର୍ଯ୍ୟନ୍ତ ଗୋବର ହୋଇ ପରୀକ୍ଷିତର କୁଶଳ ଜିଜ୍ଞାସାପୂର୍ବକ ପିଲାମାନଙ୍କୁ ଅପସାରଣ କରିବାରେ ସଫଳ ହେଲେ । ପରୀକ୍ଷିତ

ଏବେ ଘର ଭିତରେ ସୁଟ୍‌କେଶ, ବେଡ୍ ଓ ତା' ଭିତରେ ଥିବା ବ୍ୟାଗ୍, ମଲା, ମୋଢ଼ା, ମାଣିକ୍ୟ ଦଦ୍ଦ ସୁରକ୍ଷିତ ଓ ଲୁଗା ବଦଳେଇ ନୂଆ ଲୁଙ୍ଗି ଓ ନୂଆ ଗଞ୍ଜି ପିନ୍ଧି ଦୁଆର ବନ୍ଦରେ ଦୃଶ୍ୟ ଦେବା ମାତ୍ରକେ; 'କକା ମୋ ପାଇଁ ପାନିଅ ଆଣିଚ ? ବାପା ମୋ ପାଇଁ ଟଚ୍ଲାଇଟ୍ ଆଣିଚୁ ?' ଇତ୍ୟାଦି ମଣ୍ଡୁମାନେ ତାକୁ ଘେରି ଯାଉଚନ୍ତି । ପଞ୍ଚାକ୍ଷିତର ମୁଣ୍ଡ ବର୍ତ୍ତମାନ ବେଶ୍ ଭଲ, ବେଶ ଫୁର୍ତ୍ତି, ସନ୍ତୁଷ୍ଟ ଓ ପ୍ରଫୁଲ୍ଲ । ବଙ୍ଗଳା ମିଶା ଓଡ଼ିଆରେ ଜଣାଯାଉଚି ତା'ର ଭ୍ରମଣ ବୃତ୍ତାନ୍ତ (ଓ ତା' ସ୍ତ୍ରୀ ବର୍ତ୍ତମାନ ଗର୍ଭରେ ଅନାଗତ ନିଜ ଯାଆ ଅଣ୍ଡିକୁ ) ବାଣ୍ଟି ଦଉଚି ପ୍ଲାଷ୍ଟିକ ମାଳି, ସନ୍ଦେଶ, ଗୁଡ଼ାଖୁ, ପାନିଆ, ଇଲେକ୍ଟ୍ରିକ୍ ଲଗା ପେଣ୍ଟ୍, ଅଙ୍ଗୁର, ଇସ୍ପାତ ମୁଦ୍ରି ଇତ୍ୟାଦି । ତା' ଘର ସାମ୍ନାରେ ଏବେ ଖାଲି କସ୍ମେଟ ଖୋଳ, ଜରି କାଗଜ ଇତ୍ୟାଦି ଗଦା ଓ ସେଥିପାଇଁ ବି ଦାଣ୍ଡରେ ଗୋଟେ ଶାନ୍ତଶୃଙ୍ଖଳା ସମସ୍ୟା ଓ ପଞ୍ଚାକ୍ଷିତର ଇଚ୍ଛା ( ସେ ସମୟରେ ଦେଖନ୍ତୁ ) ମୂର୍ତ୍ତି ହେବା ଆଗରୁ । ପଞ୍ଚାକ୍ଷିତ ପାଖରେ ଏବେ ଭିଡ଼ ହୋଇଗଲାଣି. ଗାଁରୁ ଲୋକ ଅସିଲେଣି, ପଞ୍ଚାକ୍ଷିତର ଇଚ୍ଛା ସମସ୍ତଙ୍କୁ ଗୋଟେ ଗୋଟେ ସନ୍ଦେଶ ଦିଅନ୍ତା; କିନ୍ତୁ ତା'ର ବୁଦ୍ଧିମତୀ ସ୍ତ୍ରୀଦ୍ୱାରା ସ୍ୟା' ଭିତରେ ଅବଶିଷ୍ଟ ଲୋଭନୀୟ ଜିନିଷମାନେ ବନ୍ଦୀ ସିନ୍ଦୁକ ଭିତରେ । ତେଣୁ ପଞ୍ଚାକ୍ଷିତ ଗୋଟିଏ ଗୋଟିଏ ଲବଙ୍ଗ ବା ଗୁଳୁରାଇ ସାହାଯ୍ୟରେ ସମସ୍ତଙ୍କୁ ଆପ୍ୟାୟିତ କରିବାକୁ ଚେଷ୍ଟିତ ।

'ଆଉ ଏଇନେ କେଉଁଠି ?'

'ହେଇ ଲଜେନ୍‌ସ ଫ୍ୟାକ୍ଟ୍ରିରେ ।'

ଲଜେନ୍‌ସ ଫ୍ୟାକ୍ଟ୍ରି ! ଉପସ୍ଥିତ ଜନତା ସ୍ତବ୍ଧ ଓ ଚକିତ । ଅପେକ୍ଷାକୃତ ଅନୁଚ୍ଚସ୍ୱରରେ 'ଲଜେନ୍‌ସ ଫ୍ୟାକ୍ଟ୍ରି'ର ମୃଦୁଗୁଞ୍ଜନ । ଚକ୍ଷୁମାନ ବିସ୍ମୟଗତ । ପଞ୍ଚାକ୍ଷିତ ବର୍ତ୍ତମାନ ଆଜିର ଉତ୍ସାହିତ ଓ ଲଜେନ୍‌ସ ଫ୍ୟାକ୍ଟ୍ରିର ସବିଶେଷ ବର୍ଣ୍ଣନା ଆରମ୍ଭ କରିଚି, ଯାହା ନିପ୍ପନ୍ ଇସ୍ପାତ କାରଖାନାରୁ ବଡ଼ । 'ରାଉରକେଲା ଲୁହା କାରଖାନାଠୁ ବଡ଼ ?' 'ଅରେ ରାଉରକେଲା—' ପଞ୍ଚାକ୍ଷିତର କଣ୍ଠରେ ତାଚ୍ଛଲ୍ୟ ।

'ପଞ୍ଚାକ୍ଷିତ, ସ୍ୟା' ଭିତରେ ଆଉ ଆମ ଗାଁର ଅମୁକ କି ଆମ ଗାଁର କୋଉଁ ସମୁକ ସାଙ୍ଗେ ଦେଖା କରି ନାହିଁ କି ?' 'ନାଁ ନାଇଁ ?' 'ନାଁ ବୁଝୁନ, ମୋତେ କେତେବେଳେ ହେଲେ ବେଳ ହୁଏନି, କାହିଁକି ନା ମୁଁ ଧରି ଏଇ ଟିକେ ଗଲେ କମ୍ପାନୀର ହଜାର ହଜାର ଟଙ୍କା ଲସ୍, ଆଉ ମୁଁ ଦରମା ଖାଇ ସେଇଆ କରିବି ?' 'ନାଇଁମ, ସିଏ ଆଉ ଗୋଟେ କଥା ?' ଗୁ'ଗୁଣ୍ଡି, ସନ୍ଦେଶ ଓ ଗରମ ମସଲା ଧରି ପଞ୍ଚାକ୍ଷିତ ବର୍ତ୍ତମାନ 'ବାବୁ ଘରକୁ' ଯାଉଚି ଯାହାର ବାପ ଅଜା ଜମିଦାର ଥିଲେ ଓ ସେତେବେଳେ ବି ପଞ୍ଚାକ୍ଷିତର ବାପା ଭଲମନ୍ଦ ଜିନିଷ ନେଇ ସବୁଥର କଲିକତାରୁ

ଫେରିଲାବେଳେ ଦେଇ ଅସୁଥିଲା । ବାବୁଘର ବୁଢ଼ୀ ଜିନିଷ ରଖୁଚି ଓ ବସ୍ତୁ ଟି ଦ'ଟା ଆଣିଲୁନି ନାରେ, ବୋଲି କହୁଚି ଏବଂ ଗୁ' ପିଇବାକୁ ଦଉଚି, ଲୁଣପକା ଗୁ' । 'ଲୁଣପକା ଗୁ' ଆଉ ଏବେ ପାଟିରେ ଯାଉଚି ନା କହୁଚୁ ?' 'ହଁ ପାଟି ଅଭ୍ୟାସ ଗ୍ରୁଡ଼ିଯିବଣି', ବୁଢ଼ୀ କହୁଚି ଥଟ୍ଟା ଓ ବ୍ୟଙ୍ଗରେ । ପଞ୍ଚାକ୍ଷିତର ଦେହ ରାଗରେ ଜଳିଯାଉଚି; କିନ୍ତୁ ହେଁ ହେଁ ହେଃ ହେଃ ହୋଇ ଜୋର୍‌କରି ପରି ହସିବାକୁ ସେ ବାଧ୍ୟ ଓ ଲୁଣପକା ଗୁ' ପିଇବାକୁ ବି ବାଧ୍ୟ । ଜମିକିଣା କଥାଟା ବି ପଡ଼ିଗଲାଣି । ବାବୁଘର ବୁଢ଼ୀ ସୁଯୋଗ ଉଣ୍ଡୁଥିଲା, 'ଆଗ ଶହେଟା ଟଙ୍କା ଅଛିନା, ଦେଇଥାନ୍ତ, ମୋ କଡ଼ର ହେନେ ମୁଁ ଦେଇଦେମି' କହୁଚି ।

'ନାଁ ମ, ପଇସା ଆଉ ରହୁଚନା କହୁଚି ? ଭଉଣୀ ବାହାଘରକୁ କରଜ ହୋଇଥିଲା ସେ ଶୁଝା ହେଉନି ।' 'ହଉ ପଚାଶଟା ଟଙ୍କା ହେଲେ ଦେଇଥା ।' 'ନାହିଁ ମ, ଥିଲେ ତମକୁ ମୁଁ ମନା କରିଥାନ୍ତି ନା, ଥିଲେ ମୁଁ ତାକୁ ମନାକରେନା ।' 'ଅ', ପଇସା ନାହିଁତ ଜମି କିଣିବୁ କେମିତି ?' 'ଜମି ଠିକ୍ କଲେ, ଜଣେ ଦ'ଜଣକୁ କଲିକତାରେ କହିଚି, ଧାର ଦେବେ ନ ହେଲେ, ଦେଖୁଚି ତ, କଲାଜମି ଖଣ୍ଡେ ନ ହେଲେ, ଦେ ପରସ୍ତରେ ଆଉ ଚଳିହଉନି ।' 'ହଉ, ସେଇ ଜଣେ ଦ'ଜଣକୁ ଏଇନେ ଦେଖୁନ୍ତୁ ।' 'ଦେଲ୍ ଦେଖେ' ପଞ୍ଚାକ୍ଷିତ କହୁଚି, କିନ୍ତୁ ପ୍ରକୃତରେ ସିଦ୍ଧାନ୍ତ କରିସାରିଲାଣି ଯେ ବାବୁଘର ବୁଢ଼ୀକୁ ପଇସା ଧାର ଦବନାହିଁ । ପଞ୍ଚାକ୍ଷିତ ଘରୁ ବାହାରକୁ ବାହାରି ଆସୁଛି । ବାବୁଘର ବୁଢ଼ୀମାନଙ୍କ ତାଙ୍କ ଗମ୍ଭୀରଘରେ ବସି ଫୁସ୍‌ଫାସ୍ କଥାହବା କମ୍ ନୁହେଁ । ପଞ୍ଚାକ୍ଷିତର କେଜେବାପା ପରି କଲିକତାରୁ ଆଇଲାବେଳେ ଜୋତା ପିନ୍ଧି ଗ୍ରଲିଯାଇଥିଲା ବୋଲି, ସବସମକ୍ଷରେ ତା' ପିଠିରେ ଦଶ ପାହାର ବସିଥିଲା । ପଞ୍ଚାକ୍ଷିତ ଖୁସି ଓ ମନେ ମନେ ତତ୍‌କ୍ଷଣାତ୍ ଉଦ୍ଭାବିତ ଦୋଭାଷୀ ଗୀତଟିଏ ଗାଇବାକୁ ଆରମ୍ଭ କରୁଚି । ଟଇଁ ଧରି (ଯଦିଓ ଅନ୍ଧାର ହବାକୁ ଡେର୍ ଡେର ଅଛି ) ଗାଁରେ ଆଠ ଦଶ ଘରୁ ବୁଲି ଆସିଲଣି । କଲିକତାର ବରାଟ ଲିଜେନ୍‌ସ ଫ୍ୟାକ୍ଟ୍ରୀରେ କାମ କରୁଥିବା ପଞ୍ଚାକ୍ଷିତ ଏଇ ମୁହୂର୍ତ୍ତରେ ଜଣେ ସମ୍ମାନିତ ଲୋକ । ଗାଁରେ ଅନ୍ୟ ଘର ସାଙ୍ଗେ ପଞ୍ଚାକ୍ଷିତର ମା', ସ୍ତ୍ରୀ ଓ ଭାଇର କଳି ହୋଇଗଲାଣି । ପଞ୍ଚାକ୍ଷିତ ଅଭିଯୋଗ ସବୁ ଶୁଣୁଚି କିନ୍ତୁ ଏଇ ମୁହୂର୍ତ୍ତରେ କୌଣସି ନିର୍ଦ୍ଦିଷ୍ଟ ମତାମତ ଦେଉନାହିଁ ଓ ଦେଖିବା ଦେଖିବା ବୋଲି କହୁଚି ।

ସାଧବ ପୁଅ ନଗରୀର ଗୃହେ ଗୃହେ ଭ୍ରମଣ କରି
ଉପହାର ମାନ ଅର୍ପଣ କରୁଅଛି ଓ
ଆଶୀର୍ବାଦ ଗ୍ରହଣ କରୁଅଛି ।

ପ୍ରଥମ ଦ୍ୱ' ଗୃହଦାନ ଖୁସିରେ ଗଡ଼ିଗଲା । ଏବେ ପଣ୍ଡିତର କମିଶନ କଥାଟା ନେଇ କାହାର କାହାର ସନ୍ଦେହ ହେଲାଣି । ତା'ସ୍ତ୍ରୀ ତାକୁ ଲୋଚନ ସାହୁ ଓ ବାସ୍ନା ସାହୁଏ ଦ୍ୱ'ଘର କେମିତି ତାକୁ ଦେଖୁବେଳେ ହଇରାଣ କରୁଛନ୍ତି, ତା'ର ପ୍ରାଞ୍ଜଳ ବର୍ଣ୍ଣନା ଦେଇ ଅନେକ କନ୍ଦାକଟା କରି, ଭିନିଦିନ ରାତିରେ କହି ସାରିଛି । ଏ ସବୁ ଶୁଣି ପଣ୍ଡିତ ପ୍ରତିଶୋଧ ନେବାର ଅନେକ ବୀରତ୍ୱପୂର୍ଣ୍ଣ ପନ୍ଥାର ସ୍ୱପ୍ନ ରାତିରେ ଦେଖୁଛି, ସକାଳୁ ସକାଳୁ କାହା ସାଙ୍ଗେ କଳି କରିବାକୁ ଇଚ୍ଛା ହଉନି । ତା' ସ୍ତ୍ରୀ ଚଡ଼ିଗଲାଣି ! ଏଟା କମିଶନ୍ ମାଇନ୍‌ଆ ସଇତାନ୍‌ଟାଏ ମ ? ତା' ସ୍ତ୍ରୀ ଯେ କି ପ୍ରଥମ ଦ୍ୱ' ଗୃହଦାନ ଖୁସିରେ ଥିଲା, ଏବେ ଭିତରେ ନିଆଁ ଜଳୁଥିବାର ଅନୁଭବ କଲାଣି ଓ ଗାଁରେ ବି ଗୃହଟା ଅଶ୍ଳୀଳ କଳି କଲାଣି । ସପ୍ତାହକ ଭିତରେ ପଣ୍ଡିତ ଉପରେ ବୀରତ୍ୱ ଲଦା ହୋଇଯାଇଛି ଓ ଏଇ ଲଦା ହୋଇଥିବା ବୀରତ୍ୱ ସହାୟତାରେ, ସେ ବାସ୍ନା ସାହୁ ସାଙ୍ଗେ ଖଣ୍ଡେ ପଟେ ଲଗେଇ ଦେଲାଣି । ତା' ମା' ତାକୁ ଦ୍ୱ' ଗୃହଅର ବଳକାମ, ଗୁହାଳକାମ ଛଡ଼ିବାକୁ ବରଦ କଲାଣି । ଦ୍ୱ' ସପ୍ତାହ ଭିତରେ ଦ୍ୱ' ପୁଅ ଓ ଗାଈ ପାଇଁ ( ତା' ଦହି ଭଲ ରହୁ ନ ଥିଲା, କ୍ଷୀର କିଏ ଉଡ଼େଇ ନଉଥିଲା ) ମେଳା ହେଇ ସରିଗଲାଣି । ତୃତୀୟ ସପ୍ତାହରେ କଷ୍ଟମା ରାଉଳ ସାଙ୍ଗେ କେସ୍ ବିଷୟରେ ଗୋଟେ ବାଜି ମଜ୍ଜର ହୋଇଗଲାଣି । ଆଜିକାଲି ତା' ସାଙ୍ଗମାନେ ଆଉ କେହି ଅସୁନାହାନ୍ତି । ପଣ୍ଡିତର ଗୃହର ଗୃହ- ଯାଇଚି ବୋଲି ଦ୍ୱ' ଗୃହଜଣ ଖଲୁଆ ପେଞ୍ଚୁଆ ଲୋକ ଗାଁ ଭିତରେ ଗୋଟେ ବଦନାମି ଆରମ୍ଭ କଲେଣି । ଲୋକେ ପଚାରିଲେଣି, 'କିରେ ପରିଆ ଯାଇନୁ କି ? କେବେ ଯାଉଚୁ ?' ଗାଁ ପିଲାଏ ଯାତ୍ରା ପାଇଁ ଦଶଟଙ୍କା ଚୂନ୍ଦା ପକେଇଚନ୍ତି । ପଣ୍ଡିତ ଏତେ ଦେଇପାରିବ ନାହିଁ ବୋଲି କେହିବି ହଉଚି । ପିଲାଏ ବିଶ୍ୱାସ କରୁ ନାହାନ୍ତି, ତା' ପାଖରେ ପଇସା ଲୁଅଡ଼େ ନାହିଁ । ବିସ୍କୁଟ୍, ସନ୍ଦେଶ୍, ଅଙ୍ଗୁର୍, ବାସ୍ନାତେଲ, ଶାଢ଼ୀବେଲକୁ ପଇସା ଅଛି । ସବୁଦାବ ପଣ୍ଡିତ ଘରେ ରହିଲା ପଡ଼ୁଚି । ରାସ୍ତାରେ ଗଲାବେଳେ କୁହାଟ ଶୁଣିବାକୁ ପଡ଼ୁଚି । ଥରେ ଦ୍ୱ' ଥର ଯାଇ ଜଣେ ଦ୍ୱ' ଜଣଙ୍କ ବାପା ମାଆଙ୍କ ଆଗରେ ପଣ୍ଡିତ ଫେରାଦ ହେଲାଣି ।

ନାଁ, କୌଣସି ସମସ୍ୟାର ସମାଧାନ ହେଇପାରୁନି । ଭିନେ ଭାଗ ପାଇଁ ଭାଇ ସାଙ୍ଗେ କଥାବାର୍ତ୍ତା ହୋଇ ପାରିଲା ନାହିଁ । ଏଥର କଲିକତାରୁ ଆଣିଥିବା ଷ୍ଟିଲ୍ ଆଲଆକୁ ବାବୁଘର ବୁଢ଼ୀ ପାଖେ ବନ୍ଧା ପକେଇ ରାତିରେ ପଣ୍ଡିତର ସ୍ତ୍ରୀ ଦଶଟଙ୍କା ଆଣିଚି ଓ ଯାତ୍ରା ଚୂନ୍ଦା ଦଉଚି । କୌଣସି କେସ୍ କରିହେଲା ନାହିଁ କି ବାସ୍ନା ସାହୁ ସାଙ୍ଗେ ଆପୋଷ ମିଳାମିଶା ହେଲାନାହିଁ ।

ଚତୁର୍ଥ ସପ୍ତାହ ଶେଷରେ ପଣ୍ଡିତ କଲିକତା ଫେରିଯାଉଚି, ସୁଟ୍‌କେସ୍ ଏଥର ଖାଲି । ଏମିତି ଅନେକ ଦିନ ଆଗେ ବଡ଼ ଦ୍ୱ' ଭାଇଙ୍କ ସାଙ୍ଗେ ପ୍ରଥମ ଥର

ପାଇଁ ଖେ ଖେ ରକ୍ତ କଶ ପର୍ସ୍ଥିତ କଲ୍‌କତା ଚ୍ଚଲ ଯାଇଥିଲ । ତା' ଭଉଣୀର ବାହାଘର ହୋଇଯାଇଥିଲ । ଦାମୁଡ଼ିଆ ହଳକ ଓ ଦ'ଟା ଗାଈ ବକ ବ ପଇସା ଅଣ୍ଟି ନଥିଲ । ତା' ବାପା ଆଉ ଦାନ ଭଉଣୀ ତାକୁ ଛାଡ଼ିବାକୁ ବସ୍‌ଷ୍ଟାଣ୍ଡ ଯାଏ ଆସିଥିଲେ, ବସ୍ ଛାଡ଼ିଦେଲାବେଳେ ତା' ସାନଭଉଣୀ ଭେଁ କନା କାନ୍ଦ ପକେଇଲ । ଏବେ ସେ ବାହା ହୋଇଗଲଣି, ବଡ଼ଭାଇ କଲ୍‌କତା ଯାଉନାଇଁ, ମହିଆଁ ଭାଇ ଅନେକ ଦନ ହେଲ ଗାଁକୁ ଆସୁନାଇଁ, ଶୁଣାହଉଚ ଯେ, ସେ କୁଆଡ଼େ ଗୋଟେ ଝିଅ ଧର ଅଛ । ପର୍ସ୍ଥିତ ଲୁଚ ଲୁଚ ଖବର ନେଇଥିଲ, ତା' ଭାଇ ଝିଅ ଫିଅ ଧରନ, ପାଇଖାନା କମ୍ପାନୀରେ କାମକରେ ବୋଲ ସେ ଲାଜରେ କାହାକୁ କହେନାଇଁ ।

ଆଜ ରାତରେ ସେ କେତେବେଳେ ପହଞ୍ଚିବ ? ଦାଡଟା ହୋଇଯିବ । ଟ୍ରାମ୍ ମିଳବ, ସାତ ନମ୍ବର ଟ୍ରାମ୍ । ଚୌକିଦାର ମଉସା ଥିବ ? ଗୃହକାଠିଟା ଅଣିଚ । କାଲ ସକାଳୁ ପୁଣିଥରେ ସେ ଗୁଆ ଭାଙ୍ଗିବ, ପାନ ଭାଙ୍ଗିବ, ସିଗାରେଟ୍ ବଢ଼ାଇଦେବ, କାଆଁ ଲାଗି ଝୁଲୁଥିବା ନଡ଼ିଆକତା ରସି ଆଡ଼କୁ ହାତ ଦେଖେଇ ଦଉଥିବ, ପାନ ଡେମ୍ପରେ ଚୂନ ଲଗେଇ ବଢେଇ ଦେଉଥିବ । କେତେବେଳେ ଲେବଂଚୁସ୍‌ଟିଏ, କୋଉଦନ ଗୁଳଗୁଡ଼ ଜ ଅଲେଇଚ, ଗୁଆ ଜ ପାନଆଟିଏ ଦନ୍ତପର୍ଣରେ ଯୋଡ଼ରେ ଗୁଞ୍ଜି ଦଉଥିବ । ରାତ ଦଶଟା ପରେ, ବଜାରୀ ଟୋକାଙ୍କ ଟିଟ୍‌କାରୀ, କେବେ କେବେ କହୁଣିଭୁଷା ଖାଇ ପର୍ସ୍ଥିତ ଚ୍ଚଲ ଚ୍ଚଲ ଯିବ ଗୋଟେ କର୍ଲେମିଟର ବାଟ । ସେଇ ଗଳିରେ ଗୋଟେ ଘରେ ଚୌକିଦାର ମଉସା ଥାନ୍ତେ ରହେ । ଡୁପ୍ଲିକେଟ୍ କାଠିରେ ଗୃହ ଖୋଲ ପର୍ସ୍ଥିତ ସପ ମେଲେଇ ଦବ, ଦସ୍ତି ଦବ ତା' ଜନସାକର ରୋଜଗାର ସୁଟ୍‌କେଶ୍ ଭିତରେ ଓ ସପ ମେଲ ଶୋଇଯିବ । ସକାଳୁ ପାଞ୍ଚଟା ବାଜ ନଥିବ, ଚୌକିଦାର ମଉସା ଆସି ଉଠେଇବ ପର୍ସ୍ଥିତକୁ । ପର୍ସ୍ଥିତ ନାଦ ମଳ ମଳ ଉଠୁ ଉଠୁ, ଚୌକିଦାର ମଉସା ସେଇ ସପରେ ଗଡ଼ିଯିବ । ପର୍ସ୍ଥିତ ଛଅଟାବେଳକୁ ପହଞ୍ଚିଯିବ ପାନ ଦୋକାନରେ ଯୋଉଠୁ ସେ ତନଶହ ଟଙ୍କା ଦରମା ପାଏ ।

ଓଡ଼ିଆ ସାଧବପୁଅ ଘରେ ବସେ ନାଇଁ । କଥାରେ
ଅଛ—ବାଣିଜ୍ୟେ ବସତେ ଲକ୍ଷ୍ମୀ । ଓଡ଼ିଆ ସାଧବପୁଅ
ପୁଣିଥରେ ସିଲ୍‌କ, ବାଉଁଶନଳଲୁଗା, ହୀରା-ନୀଳା-
ମୋତି-ମାଣିକ୍ୟ ବୋଇତରେ ବୋଝେଇ ପୋତ
ମେଲିଦେବ ସାତ ସମୁଦ୍ର ତେର ନଈ ଆର ପାରକୁ ।

# ଦିଲ୍ଲୀ

ଡିଅର ଡକ୍ଟର ଦାସ !

ଦିଲ୍ଲୀ ଭାରତର ରାଜଧାନୀ । ହିନ୍ଦୀ ଭାରତର ରାଷ୍ଟ୍ରଭାଷା । ଦିଲ୍ଲୀର ଭାଷା କିନ୍ତୁ ହିନ୍ଦୀ ନୁହେଁ । ତମର ମାତୃଭାଷା ଓଡ଼ିଆ । ଏବେ ତମେ ଦିଲ୍ଲୀରେ ରହୁଛ । ଦିଲ୍ଲୀର ଭାଷା ହିନ୍ଦୀ ନୁହେଁ । ଦିଲ୍ଲୀର ଭାଷା ପସ୍ ପଇସା ? ତମକୁ କୋଉ ଭାଷାରେ ଚିଠି ଲେଖିବି ଡକ୍ଟର ?

ଏବେ ଏବେ ଡକ୍ଟର ମଲହୋତ୍ରାଙ୍କ ସାଙ୍ଗେ ଦେଖା ହୋଇଥିଲା, ଏକଦମ ତାଙ୍କ ଶୋଇବା ଘରେ । ଡକ୍ଟର ମଲହୋତ୍ରା ମଣିଷେ ଉଞ୍ଚା ନୋଟ୍ ଗଦା ଉପରେ ବସିଥିଲେ । ମୁଁ କହିଲି, "ଡଃ ମଲହୋତ୍ରା, ଏ ତ ବହୁତ ପୁରୁଣାକାଳିଆ ଢଙ୍ଗ ? ଆଗେ ସିନା ଧନୀଲୋକେ, ଶେଠମାନେ ପଇସାଗଦା ଉପରେ ବସୁଥିଲେ; ଏବକାର ଧନୀ ଲୋକେ ପଇସା ଲୁଚେଇ ରଖନ୍ତି ! ଆପଣ କ'ଣ ନୋଟ୍ ବଡ଼ାର ସିଂହାସନ ଉପରେ ବସିଛନ୍ତି !"

ଡକ୍ଟର ମଲହୋତ୍ରା ଖୁବ୍ ହସିଲେ, "ତମେ ଠିକ୍ କହୁଛ । ବଢ଼ିଆ କଥାଟିଏ କହୁଛ ।" ତା' ପରେ ଉଦାସ ହେଲେ ଓ କହିଲେ, "ହେଲେ, ଆଜିକାଲି କିଛି ଆଉ ଭଲ ଲାଗୁନାହିଁ । ବ୍ୟାଙ୍କ୍-ଫ୍ୟାଙ୍କରେ ପଇସା ରଖିଲେ ଭଲ ଲାଗୁନାହିଁ । ପଇସା ଦେଇ କନକପଟ ଜାଗା ଜାୟଦାଦ୍ କିଣିଲେ ଭଲ ଲାଗୁନାହିଁ । କନକ କିଣିଲେ ଆଉ ରଖିବାକୁ ଜାଗା ନାହିଁ । ଜାଗା କିଣିଲେ ତାକୁ ଜଗିବାକୁ କେହି ନାହିଁ । ସେଇଥିପାଇଁ ପଇସା ଗଦା କରି ବସିଛି ।"

ଏତିକି କହି ସେ ମୋ' ଆଡ଼େ ବଡ଼ାଏ ନୋଟ୍ ଫୋପାଡ଼ିଲେ । ମୋତେ ଭାରି ଅପମାନିତ ଲାଗିଲା । ମୁଁ ନୋଟ୍‌ବଡ଼ାଟି ଉଠେଇ ନମ୍ରତାର ସହ ତାଙ୍କୁ ଫେରେଇ ଦେଇ କହିଲି, "ଡଃ ମଲହୋତ୍ରା, ଆପଣ ମୋତେ ଏଇଥିପାଇଁ ଡାକିଥିଲେ ? ଅପମାନ ଦେବାକୁ ? ପଇସାର ଭାଷା ମୁଁ କେବେ ବୁଝିପାରି ନାହିଁ; ଯେବେ ବେରୋଜଗାର

କଣବାର ବୟସ ଥିଲା, ତେବେ ତ ବୁଝି ନାହିଁ, ଆଉ ଏବେ କ'ଣ ବୁଝିବ ? ବନ୍ଧୁଙ୍କର ମର୍ଯ୍ୟାଦା ନେଇ ଅସିଥିଲି, ଜାଣିଲି, ମର୍ଯ୍ୟାଦା ଦେବା ଆପଣଙ୍କୁ ଆସେ ନାହିଁ ।"

ଡକ୍ଟର ମଲହୋତ୍ରା ତାଙ୍କ ନୋଟ୍‌ବୁକ୍‌ର ସିଂହାସନରୁ ଉଠିଆସିଲେ ଓ ତଳକୁ ମୁହଁ ପୋତିଲେ । ସେ ଖୁବ ଦୁଃଖୀ ଦିଶିଲେ ଓ ମୋର ରାଗ କମିଗଲା । ମୋର ରାଗ ଆଉଣ ଶାନ୍ତ ହୋଇ ନଥାଏ, ମୁଁ କହିଲି, "ଆପଣ ମୋତେ ବୁଝିବାର ବାହାରେ, ହେଲେ, ଯଦି ଗୋଟେ ଶସ୍ତା କଥା କହିବାକୁ ଅନୁମତି ଦଅନ୍ତି, ବୃଦ୍ଧ କୁକୁରକୁ ଅଧିଠା ଉତର ଫୋପାଡ଼ିଲା ପରି ଏମିତି ଟଙ୍କା ଫୋପାଡ଼ିବାର ମାନେ ତଅଣ ?"

ସେ ଏଥର କାନ୍ଦିଲେ । କାନ୍ଦି ସାରି କହିଲେ, "ଭୁଲ୍ ବୁଝିବେ ନାହିଁ । ଆପଣ ଡଃ ଦାସଙ୍କ ଦାଙ୍ଗ, ମୋର ଗୁରୁଜନ; ଆପଣଙ୍କୁ କିଛି ପଇସା ଦବାର ଥିଲା, ମୋର ତ କିଛି ହିସାବ ମନେରହୁନାହିଁ, ସେଥିପାଇଁ ନିଜ ଉପରେ ରାଗ ମାଡ଼ୁଛି ।"

ଏଥର ମୁଁ କାନ୍ଦିଲି ଓ କହିଲି, "ନିଜ ନିଜ ଭିତରେ କ'ଣ ହିସାବକିତାବ ? ମୁଁ ତ ଆପଣଙ୍କ ଘର ଲୋକ, ମୋ ସାଙ୍ଗେ କ'ଣ ହିସାବକିତାବ ?" ଓ ନମସ୍କାର କରି ଚାଲିଆସିଲି ।

ସତରେ କ'ଣ ଡକ୍ଟର ମଲହୋତ୍ରାଙ୍କର ହିସାବକିତାବ ମନେରହୁନାହିଁ ? ସେ ପରା ଏତେ ବଡ଼ ଡାକ୍ତରଖାନା ଏକାଟିଆ ଚଲାଉଛନ୍ତି ? ଶୁଣିଛି ତମେ ଜମା ଡାକ୍ତରଖାନା ହିସାବ ରଖ ନାହିଁ, ରୋଗୀ ଦେଖିଲ, ଅପରେସନ୍ କଲ, ଚାଲିଗଲ, ପଇସାପତ୍ର ହିସାବ ଜାଣ ନାହିଁ । ଆରମ୍ଭରୁ ତମେ ଏମିତି । ଯେତେବେଳେ ତମେ ନୂଆ ଫରେନ୍‌ରୁ ଫେରିଥାଅ, କାଶ୍ମୀରଠୁ କନ୍ୟାକୁମାରୀଠୁ ତମ ପାଖକୁ ରୋଗୀ ଆସୁଥିଲେ, ସେତେବେଳେ ବି ତମେ ଏଇମିତି ଥିଲ । ତା'ର କେତେ ଦିନ ପରେ ତମ ସାଙ୍ଗେ ଦେଖାହେଲା, କେତେ ବରଷ ହେଇଥିବ ? ତିନିଚାରି ବରଷ ବୋଧେ ? ତିନିଚାରିଟା ବର୍ଷରେ ତମେ କେମିତି ବଦଳିଗଲ, ଦିଲ୍ଲୀ ତମକୁ ବଦଳେଇ ଦେଲା । ତମର ଭାଷା ବଦଳି ଯାଇଥିଲା, ତମେ ମୋତେ ଯେଉଁ ଭାଷାରେ କଥା କହିଲ, ସେ ଭାଷା ମୁଁ ବୁଝିପାରିଲି ନାହିଁ । ସକାଳୁ ରାତିଯାଏ ତମେ ଅପରେସନ୍ କରୁଥିଲ; ଏପରିକି ରୋଗୀର ମୁହଁ ଦେଖିବାକୁ ତମ ପାଖେ ସମୟ ନଥିଲା । ଦରକାର ବି ନଥିଲା, ରୋଗ ସାଙ୍ଗେ ରୋଗୀର ମୁହଁର କ'ଣ ସମ୍ପର୍କ ? ସେତେବେଳେ ତମ ହସ୍‌ପିଟାଲରେ ମୋର ଅପରେସନ୍ ହୋଇଥିଲା, ତମେ ଚିହ୍ନି ନଥିବ ନାଁ ? ତମେ ଦେଖିଲାବେଳକୁ ମୋ' ମୁହଁ ଘୋଡ଼ା ହେଇଥିଲା, ଡାହାଣ ଆଖି ପାଖ କଣରେ

ଦିଶୁଥିଲା । ଯେମିତି ସିନେମାରେ ଅଖି ଅପରେସନ୍‌ରେ ହୁଏ । ମୋତେ ଲୋକାଲ୍ ଆନାସ୍ଥେସିଆ ଦିଆହୋଇଥିଲା, ତେଣୁ ମୁଁ ସବୁ ଦେଖି ପାରୁଥିଲି । ତମେ କ'ଣ ସବୁ କରୁଥିଲ, ତା'ପରେ କ'ଣ ହେଲା, ମୁଁ ଆଉ ଦେଖିପାରିଲି ନାହିଁ । ଅପରେସନ୍ ସରିଗଲା । ସାତଦିନ ପରେ ପଟି ଖୋଲା ହେଲାବେଳକୁ ମୁଁ ଆଉ ଦେଖିପାରୁ ନଥିଲି ।

ତମେ ଏତେ ପ୍ରତିଭାବାନ୍ ଡାକ୍ତର, ତମର ପ୍ରତିଭା କିଏ ନେଇଗଲା ? ମୋର ଅପରେସନ୍ କାହିଁକି ଫେଲ୍ ହେଲା ? ସବୁ ପ୍ରତିଭା ସହିତ କିଛି ବିଦ୍ୟାଧର୍ମ ରହିବା ଉଚିତ, ନ ହେଲେ ପ୍ରତିଭା ରହିବ ନାହିଁ ନା ? ଏକଥା ତମକୁ ଆଗରୁ କେହି କହି ନାହିଁ ? ତମେ କ'ଣ ବିଦ୍ୟାଧର୍ମ ଛାଡ଼ିଦେଲ ବୋଲି ତମର ପ୍ରତିଭା ବି ଚାଲିଗଲା ଡାକ୍ତର ?

ତା'ପରେ ତମକୁ ଦେଖା କରିବାକୁ ଯେତେ ଚେଷ୍ଟାକରି ଦେଖାପାଇଲି ନାହିଁ । ହସ୍‌ପିଟାଲରୁ ଡିସ୍‌ଚାର୍ଜ ହେଲାବେଳେ ବିଲ୍ ଦେବାକୁ ପଇସା ହେଲା ନାହିଁ ବୋଲି ମୋର ସ୍ତ୍ରୀ ହାର ବନ୍ଧା ଦେଇଥିଲେ ରିସେପ୍‌ସନଷ୍ଟ ପାଖେ; ମୁଁ ପରେ ପଇସା ଦେଇ ଫେରେଇ ଆଣିଥିଲି ।

କେତେଦିନ ଆଗେ ଖବରକାଗଜରେ 'ପାଠକଙ୍କ ପତ୍ର' ଶିରୋନାମାରେ ଗୋଟେ ପତ୍ର ପଢ଼ିଥିଲି । ତୁ ତ ଜାଣୁ ମୁଁ ଘଣ୍ଟା ଘଣ୍ଟା ଖବରକାଗଜ ପଢ଼େ—ତୋ' ଭାଉଜ ସେଥିପାଇଁ କେତେ ରାଗେ ! ସେଇଠି ଗୋଟେ ଚିଠି ଥିଲା, ଜଣେ ରୋଗୀ ତରଫରୁ, ରୋଗୀଟି ଦିଲ୍ଲୀରେ କୋଉ ନର୍ସିଂହୋମ୍‌ରେ ଭର୍ତ୍ତି ହୋଇଥିଲା, ପଇସା ଦେଇପାରିଲା ନାହିଁ ବୋଲି ତାକୁ ଧକ୍‌କା ମାରି ବାହାର କରି ଦେଇଥିଲେ, ଧକ୍‌କାରେ ରୋଗୀଟି ଅନ୍ଧ ହୋଇଯାଇଥିଲା । ତା'ର ରେଟିନା ଛିଣ୍ଡି କୁଣ୍ଢାମୁଣ୍ଢା ହୋଇଯାଇଥିଲା, ସେ ସବୁଦିନ ପାଇଁ ଅନ୍ଧ ହୋଇଯାଇଥିଲା । ଧକ୍‌କା ମାରିବା କ'ଣ ଦରକାର ? ମୁହଁରେ କହିଥିଲେ ତ ପିଲାଟି ଚାଲିଯାଇଥାନ୍ତା । ମୁଁ ସେ ନର୍ସିଂହୋମ୍‌କୁ ଫୋନ୍ କଲି ।

ମୁଁ ପଚାରିଲି, 'ଗୋଟେ ରେଟିନା ଡିଟାଚ୍‌ମେଣ୍ଟ ଅପରେସନ୍ ପାଇଁ ଆପଣ କେତେ ଟଙ୍କା ନିଅନ୍ତି ?'

ସେ କିଛି ଗୋଟେ କହିଲେ । ମୋର ପ୍ରାୟ ଛଅମାସର ଦରମା । ଭାରତରେ କେତେ ଲୋକ, ଏ ପରିମାଣରେ ପଇସା ଦେଇପାରିବେ ? ତା'ପରେ ମୋର କ'ଣ ହେଲା ମୁଁ ଜାଣେ ନାହିଁ । ମୋର ପାଟିରୁ ବାହାରିପଡ଼ିଲା, 'ଆପଣଙ୍କର ଯେଉଁ ପିଲା ଜନ୍ମ ହେବ, ସେ ଅନ୍ଧ ହେବ ।'

ଏବିକର କହୁନାହିଁ, ପାଟିରୁ ବାହାରିପଡ଼ୁଛି ଏମିତି । କେତେ ଯେ ଅନୁତାପ କରିଚ, ଲେଖୁଚ ସେ କଥା ।

ତା'ପରେ ଥରେ ଦିଲ୍ଲୀକୁ ଯାଇଥିଲି । ଶୁଣିଲି ଡଃ ମଲହୋତ୍ରା ସାଙ୍ଗେ ତୋ'ର ବାହାଘର ହୋଇଯାଇଚୁ । ତୁ ଭାଉଜଙ୍କଠୁ ଅଲଗା ରହୁଚୁ । ତାଙ୍କୁ ଛାଡ଼ପତ୍ର ଦେଇଦେଇଚୁ । ମୁଁ ସେଥର ତମକୁ କାହାକୁ ଦେଖା ନକରି ଫେରିଆସିଲି ।

ଏବେ ଭାଉଜଙ୍କ ପାଖକୁ ଯାଇଥିଲି । ସେ ମୋତେ ଦେଖି ଖୁସି ହେଲେ । ତେବେ, ଖୁସିହବା କଥା ନେଇ ମୁଁ ଲେଖୁନାହିଁ । ମୁଁ ଯେ, ତାହାଣ ଆଖିରେ ଦେଖିପାରୁ ନାହିଁ, ସେକଥା ତାଙ୍କୁ କହିଲି ନାହିଁ । ତେବେ ସେ ମୋତେ ଗୋଟେ କଥା କହିଲେ, ଯୋଉଁଟା ଶୁଣିବାବେଳୁ ଭଲ ଲାଗୁ ନାହିଁ, ସେଇଥିପାଇଁ ଏ ଚିଠି ଲେଖୁଚ ।

ତୋ'ର ଗୋଟିଏ ପୁଅ ହୋଇଥିଲା, କୁଆଡ଼େ ଡଃ ମଲହୋତ୍ରାଙ୍କ ସାଙ୍ଗେ ବାହାଘରର ଅଳ୍ପଦିନ ପରେ । ତୋ ପୁଅର ଆଖି ଜନ୍ମ ବେଳେ କୁଆଡ଼େ ଅନ୍ଧ ଥିଲା, ତୁ କୁଆଡ଼େ ଅପରେସନ୍ କରି ତା' ଆଖି ଭଲ କରିଦେଲୁ । ତା'ପରେ ଭାଉଜ କହିଲେ, ବୋଧେ ଗୋଟେ ଆଖି ଭଲ ହେଲା; ବୋଧେ କୌଣସି ଲୋକ ତା'ର କର୍ଣ୍ଣିଆ ଦାନ କରିବାରୁ ତୋ' ପୁଅର ଆଖି ଭଲ ହେଲା । ଭାଉଜ କହୁଥିଲେ ଦାନଫାନ ନୁହେଁ ପଇସା ଦେଇ କିଣୁଛ ଆଣିଚୁ, ପଇସା ଦେଲେ ଆଜିକାଲି ମଣିଷ ଦେହର ସବୁ ସ୍ପେୟାର ପାର୍ଟସ୍ ମିଳୁଚ ।

ଭାଉଜ କହୁଥିଲେ ଥରେ ଡଃ ମଲହୋତ୍ରା ଜଣେ ରୋଗୀକୁ ଧକ୍କା ମାରି ତାଙ୍କ ହସ୍ପିଟାଲରୁ ବାହାର କରିଦେଲେ, ରୋଗୀଟି ଅନ୍ଧ ହୋଇଗଲା । ଭାଉଜ କହୁଥିଲେ ତା'ପରେ ତାଙ୍କୁ କିଏ ଜଣେ ଫୋନ୍‌ରେ ଅଭିଶାପ ଦେଲା ଯେ, ତାଙ୍କ ପୁଅ ଅନ୍ଧ ହୋଇଯିବ । ତା'ପରେ ତାଙ୍କର ପୁଅ ହେଲା, ଗୋଟିଏ ବୋଲି ପୁଅ; ଆଉ ତାଙ୍କର ପୁଅ ହବାର ବୟସ ନ ଥିଲା । ସେ କଥା ଶୁଣି ମୋତେ କେମିତି କେମିତି ଲାଗିଲା, ମନ୍ଦ ଲାଗିଲା, ଭାବିଲି, ଗୋଟେ ଅଜଣା ରୋଗୀ ପାଇଁ କାହିଁକି ମୁଁ ଅଭିଶାପ ଦେଲି ? କାରଣ ଏ ଅଭିଶାପ ତ ମୋରି; ହେଲେ, ଅଭିଶାପ କ'ଣ ଫଳେ ? ହେଲେ, ଅବଶ୍ୟ ଏମିତି ହୋଇପାରେ । ଭ୍ରୂଣ ଉପରେ ନାନାପ୍ରକାରର ପ୍ରଭାବ ପଡ଼ିପାରେ । ଛାଡ଼ ଶଳା ସବୁ ଭାଗ୍ୟର ପରିହାସ ।

ତା'ପରେ ମୁଁ ତମ ହସ୍ପିଟାଲକୁ ଗଲି । ସେଠି ତୋର ନାଆଁ ଏବେ ବି ଲେଖାଯାଇଚୁ, ଯଦିଓ ତୁ ଆଉ ଆଜିକାଲି ଅପରେସନ କରୁନାହୁଁ । ମୁଁ କହିଲି, ମୋର କାଗଜପତ୍ରର କପି ଦରକାର । ହେଲେ ନମ୍ବର ଫମ୍ବର ମନେ ନାହିଁ, ଅନ୍ଦାଜ ଏତେ ତାରିଖରେ ଅପରେସନ ହୋଇଥିଲା । ସେଇଠି ରେଜିଷ୍ଟରରେ ଦେଖିଲି

ଯୋଉ ଦିନ ମୋର ଅପରେସନ ହୋଇଥିଲା, ସେଇଦିନ ତୋ' ପୁଅର ଅପରେସନ ହୋଇଥିଲା । ତୋତେ ଦୋଷ ଦେଉନାହିଁ, ଭାବନା ସନ୍ଦେହ କରୁଚ ବୋଲି, ଖାଲି କୁତୁହଳ ହେଲା ବୋଲି ଲେଖୁଚି । ତୁ ତ ମୋର ଅଖି ଦେଖିଥିଲୁ, କିଛି କହିଲୁ ନାହିଁ । ତା'ପରେ ଡଃ ମଲହୋତ୍ରା ଦେଖିଲେ, କହିଲେ, 'ଅପରେସନ ଦରକାର ।' ମୁଁ ଚହିଲି, 'ଦାମ୍ ତ କିଛି କହିଲ ନାହିଁ ।' ଡଃ ମଲହୋତ୍ରା କହିଲେ, 'ଆପଣଙ୍କର ସାଙ୍ଗ ତ, ଆପଣ ବ୍ୟସ୍ତ ହେବେ, ସେଥିପାଇଁ କିଛି ଚହିଲେ ନାହିଁ ।' ଯାଃ, ତମେ କହୁ କହୁ କେତେବେଳୁ ତୁ'କୁ ଖସି ସାରିଲିଣି । କିନ୍ତୁ ମୂଳ କଥାକୁ ଆସିନାହିଁ ଏଯାଏ, ଚିଠିଟା ବି ଲମ୍ବା ହୋଇଗଲିଣି, ଭାବୁଚି ତୁ ପଢ଼ିବୁ ନାହିଁ; ଯଦି ନ ପଢ଼ିବୁ, ଆଉ ଟିକେ ଲମ୍ବା ହେଲେ କ୍ଷତି କ'ଣ ?

ତେବେ, ଭାବୁଥିଲି ମୋର ଡାହାଣ ଅଖିଟାରେ ଯଦି ଆଉ କିଛି ଦରକାରୀ ଅଂଶ ଥାଏ' ଯଦି ତୋ ପୁଅର କାମରେ ଆସେ, ନେଇଥାନ୍ତୁ । ତେବେ ନ୍ୟାୟ ବିଚାର ହୁଅନ୍ତା, ଅବଶ୍ୟ ନ୍ୟାୟ ବିଚାରର ଫଳ ମୋତେ ମିଳିଯାଇଛି, ତୋ' ପୁଅକୁ ଗୋଟେ ଆଖି ମିଳିଛି, ମୋର ବି ଗୋଟିଏ ଅଖି ଅଛି । ତେବେ ଶୁଣୁଚି ତୁ ଏବେ ପ୍ରାୟ କିଛି ବୁଝିପାରୁ ନାହୁଁ । ଭାରସାମ୍ୟ ରଖି ପାରୁନାହୁଁ, ଶୁଣୁଚି ତୋତେ ବହୁତ ସମୟରେ ସାନାଟୋରିଅମ୍‌ରେ ରଖାଯାଉଚି, ଆଉ ଗୋଟେ କୋଉ ନାଆଁରେ । ଆଉ ଜଣେ କିଏ କୁଆଡ଼େ ତୋ ନାଆଁରେ ଡଃ ମଲହୋତ୍ରା କ୍ଲିନିକ୍‌ରେ ଅପରେସନ କରୁଚି । ତେବେ, ତୁ କିଏ ? ଯେଉଁ ଲୋକଟି ଲୁଚି ଲୁଚି ପାଗଲଖାନାକୁ ଯାଉଚି ସେ, ନା ଯେଉଁ ଲୋକଟି କ୍ଲିନିକ୍‌ରେ ଅପରେସନ୍ କରୁଚି ତୋ ନାଆଁରେ ସେ ?

ଏବେ ଏ ଚିଠିଟା ଲେଖିସାରି କ'ଣ କରିବି ବୋଲି ଭାବୁଚି । ତୋ ପାଖକୁ ପଠେଇ ପାରିବି ନାହିଁ, ପଠେଇଲେ ବି ତୁ ପଢ଼ିପାରିବୁ ନାହିଁ, ପଢ଼ିଲେ ବି ବୁଝିପାରିବୁ ନାହିଁ । ଏବେ ଏ ଚିଠିଟାକୁ ନେଇ କରେ କ'ଣ ? ଧେତ୍ କାହିଁକି ଏ ଚିଠିଟା ଲେଖିଲି ଯେ !

।। ଇତି ।।



# ରେବତୀ

ରେବତୀ ମାଟ୍ରିକ୍ ଫାଷ୍ଟ ଡିଭିଜନ୍‌ରେ ପାସ୍ କରି ଯେଉଁଦିନ କଲେଜ ପଢ଼ିବାକୁ ଚାଲିଗଲା, ସେଇଦିନଠୁ ମୋର ଏବଂ ମୋର ସାଙ୍ଗମାନଙ୍କର ତା' ପ୍ରତି ଅତ୍ୟନ୍ତ ଈର୍ଷା ଆସିଗଲା । ରେବତୀର ବାପା ସହରରେ ମୁକ୍ତିଆର ଥିଲେ ଓ ତାଙ୍କର ଅନେକ ଜମିବାଡ଼ି ଥିଲା । କଥା କଥାକେ ସେ କେସ୍ ଜିତି ପକାଉଥିଲେ, ସେଥିପାଇଁ ଆମେ କ'ଣ ଆମର ବାପା-ଅଜାମାନେ ବି ତାଙ୍କ ସାଙ୍ଗେ କଳି କରିବାକୁ ଚାହୁଁ ନଥିଲେ । ତେଣୁ ଯଦିଓ ରେବତୀର ଏଇପରି ହାଇହିଲ୍ ଜୋତା ଓ ସାଲୁଆର୍ କାମିଜ୍ ପିନ୍ଧି ବାହା ନ ହୋଇ କଲେଜକୁ ପାଠ ପଢ଼ିବାକୁ ଚାଲିଯିବା ବିଷୟଟାକୁ ଆମେ ଓ ଆମର ବାପା ଅଜାମାନେ ପୁରାପୁରି ନାପସନ୍ଦ କରୁଥିଲୁ, କେହି ଭରସି ତା' ବାପାଙ୍କୁ କିଛି କହିପାରୁ ନଥିଲୁ । ସେ ସମୟରେ ମୁଁ ସପ୍ତମ ଶ୍ରେଣୀରେ ଥରେ ଫେଲ୍ ହୋଇସାରିଥାଏ । ରେବତୀ ଅନବରତ ଭଲ ପଢ଼ୁଥିବାରୁ ଆମେମାନେ ତା' ବିଷୟରେ ଅନେକ କଳ୍ପନା ଜଳ୍ପନା କରୁଥିଲୁ ଓ ସହରର କଲେଜମାନଙ୍କରେ ଅବାରିତ ପୁଅ-ଝିଅମାନେ ସାଙ୍ଗ ହୋଇ ବୁଲିବା, ସିନେମାଦେଖିବା, ଜଙ୍ଗଲକୁ ଭୋଜି କରିବାକୁ ଯିବା ଓ ଅନେକ ସମୟରେ ପରସ୍ପରର ହଷ୍ଟେଲ୍‌ରେ ରହିଯିବା କଥା ନେଇ ଗପ କରୁଥିଲୁ । ରେବତୀ ବି. ଏସ୍‌ସି. ପାସ୍ କଲା ପରେ ବି ସେତେବେଳେ ବାହା ନ ହେଲା, ସେ ନିଶ୍ଚୟ କୌଣସି ଗୋରା ତେଲଙ୍ଗା ଲୋକ ସାଙ୍ଗରେ ପ୍ରେମ କରୁଚି ବୋଲି ଆମେ ସ୍ଥିର ସିଦ୍ଧାନ୍ତ କରିଥିଲୁ; କିନ୍ତୁ ସେ ଗୋରା ତେଲଙ୍ଗା ଲୋକଟି କିଏ, ସେ ବିଷୟରେ ଅନେକ ମତପାର୍ଥକ୍ୟ ଥିଲା । କେତେକଙ୍କ ମତରେ ସେ ତା'ର ଅଧ୍ୟାପକ, ଆଉ କେତେକଙ୍କ ମତରେ ସେ ସହରର ସବୁଠୁ ବଡ଼ କଂଟ୍ରାକ୍ଟରର ପୁଅ, ଆଉ କେତେକଙ୍କ ମତରେ ସେ ମାଟ୍ରିକ୍ ଫେଲ୍ ଚେହେଟ ଚିକ୍କଣ ଛତରଟିଏ ଥିଲା, କିନ୍ତୁ ପ୍ରେମଅନ୍ଧ ଥିବାରୁ ରେବତୀ ଏକଥା ବୁଝିପାରୁ ନଥିଲା ।

ମାଟ୍ରିକ୍ ପାସ୍. କଲା ପରେ ଆମ ଗାଁ'ଠାରୁ ପାଞ୍ଚ କିଲୋମିଟର ଦୂର ପ୍ରାଇଭେଟ୍ କଲେଜରେ ମୁଁ ନାଁ ଲେଖେଇଲି । ମୁଁ ନିଜେ କଳାର ଛାତ୍ର ଥିଲି; ଅନେକ ସମୟରେ ପାଖକୁ ପାଖ ଛିଡ଼ାହୋଇ, ପ୍ରାୟ ମୁହଁକୁ ମୁହଁ ଲଗେଇ,

ଅଣୁବୀକ୍ଷଣ ଯନ୍ତ୍ର ଭିତରକୁ ପୁଅ-ଝିଅମାନେ ଅନାଇଲାବେଳେ ସେମାନଙ୍କ ଭିତରେ ପ୍ରେମ ଯେ ଅବଶ୍ୟମ୍ଭାବୀ, ସେ କଥା ଆମେମାନେ ସ୍ଥିର କରିସାରିଥିଲୁ ଓ ଲାବରେଟରୀ ଝରକା ବାହାରେ ଛିଡ଼ାହୋଇ ଦୀର୍ଘଶ୍ୱାସ ମାରୁଥିଲୁ । ରେବତୀ ପ୍ରାଣିବିଜ୍ଞାନ ପଢ଼ୁଥିଲା ବୋଲି ଏହା ଭିତରେ ମୁଁ ବୁଝିସାରିଥିଲି । ତେଣୁ ସେ ଗୋରା ଡେଙ୍ଗା ଲୋକଟି ଯେ ନିଶ୍ଚୟ ରେବତୀର ସହପାଠୀ ନଚେତ୍ ଅଧ୍ୟାପକ, ସେ ବିଷୟରେ ମୁଁ ସଂପୂର୍ଣ୍ଣ ନିଶ୍ଚିତ ହୋଇସାରିଥିଲି । ରେବତୀର ପ୍ରେମ ସମ୍ପର୍କରେ ଆମର କଳ୍ପନା-ଜଳ୍ପନା ଅନେକ ଦୂର ଯାଇସାରିଥିଲା ଓ ସେ ଗୋରା ଡେଙ୍ଗା ଲୋକଟି ଥରେ ଖରା ଛୁଟିରେ ରେବତୀ ଥିବାବେଳେ ଆମ ଗାଁକୁ ଆସିଥିଲା ବୋଲି ଆମେ ନିଶ୍ଚିତ ହୋଇ-ଯାଇଥିଲୁ । ବାସୁ, ଯାହାର ଭଉଣୀ ଆମ ଗାଁରେ ବାହା ହୋଇଥିବାରୁ ସେ ମଝିରେ ମଝିରେ ଆମ ଗାଁକୁ ଆସୁଥିଲା, ସେ ମେଟ୍ରିକ୍ ପାସ୍ କଲା ଦିନଠୁ ରେବତୀ ସାଙ୍ଗେ ବାହାଘର ପ୍ରସ୍ତାବ ପକେଇବା ପାଇଁ ନିଜ ଘରେ କହି ଦେଇଥିଲା । ବାସୁ ରେବତୀ ସମ୍ପର୍କରେ ଏସବୁ ଗପକୁ ଅଧା କୋର୍ଟରେ କାଟି ଉଡ଼େଇ ଦେବାକୁ ଚେଷ୍ଟା କରୁଥିଲା । ରେବତୀକୁ ବାହା ହେବାର ବାସନା ବାସୁ ମନରେ ଅନେକ ଦିନ ରହିଲା ଓ ରେବତୀ ସାଙ୍ଗେ ଯୋଗ୍ୟତାରେ ସମତୁଲ ହେବାପାଇଁ ସେ ପ୍ରାଣପଣେ ଚେଷ୍ଟା କଲା । କୌଣସିମତେ ସେ ବି. ଏ. ପାସ୍ କରିଗଲା, କିନ୍ତୁ ରେବତୀ ଏ ପ୍ରସ୍ତାବ ଶୁଣି ଏତେ ଜୋର୍‌ରେ ମୁହଁ ଛୁଆଁଡ଼ି ଦେଲା ଯେ ତା' ବେକରେ ରକା ପଶିଗଲା । ସେଇ ଦିନଠୁ ବାସୁ ମଧ୍ୟ ଆମ ସାଙ୍ଗେ ରେବତୀ ବିରୁଦ୍ଧରେ ଆଲୋଚନାରେ ସକ୍ରିୟ ଓ ସରସ ଅଂଶ ଗ୍ରହଣ କଲା । ରେବତୀ ବି. ଏସ୍‌ସି. ପାସ୍ କରି ସାରିଲା ପରେ ମଧ୍ୟ ବାହାହେଲା ନାହିଁ ଓ ଏମ୍. ଏସ୍‌ସି. ପଢ଼ିବାକୁ ଭୁବନେଶ୍ୱର ଚାଲିଗଲା ।

ଏହା ଭିତରେ ରେବତୀର କବିତା ମଝିରେ ମଝିରେ ବିଭିନ୍ନ ପତ୍ରପତ୍ରିକାରେ ବାହାରୁଥିଲା । ଅନ୍ୟବେଳେ ସେ ରେଡ଼କ୍ରସ୍ ସାହାଯ୍ୟ ବାଣ୍ଟୁଥିବାର ଫୋଟୋ ଥରେ ଖବରକାଗଜରେ ବାହାରିଥିଲା, ଯଦିଓ ଫୋଟୋରୁ ତାକୁ ଚିହ୍ନି ହେଉ ନଥିଲା, ତଳେ ତା' ନାଁ ନିଃସନ୍ଦେହରେ ଲେଖାଯାଇଥିଲା । ତା' ସତ୍ତ୍ୱେ ସେଟା ରେବତୀର ଫୋଟୋ ନୁହଁବୋଲି ଆମେ ଅନେକ ଯୁକ୍ତି କରିଥିଲୁ । ସବୁଥର ଗାଁକୁ ଆସିଲା-ବେଳେ ରେବତୀ ଅନେକ କପ୍ ଓ ପ୍ରାଇଜ୍ ନେଇ ଆସୁଥିଲା; ଯାହାକୁ ତା' ମା' ଭାଣ୍ଡିଘରେ ସଜେଇ ରଖୁଥିଲେ । ସବୁ ଲୋକଙ୍କୁ ରେବତୀର ମା' ଅତି ଗର୍ବରେ ଏସବୁ ଜିନିଷ ଦେଖାଉଥିଲେ ଯଦିଓ ବ୍ୟାନ୍‌ହେଲର ଡିବେଟ ପାଇଁ ପାଇଥିବା କପ୍‌ଟିକୁ ହପ୍-ଷ୍ଟେପ୍-ଜମ୍ପ୍ ପାଇଁ ପୁରସ୍କାର ବୋଲି କହି ପକାଉଥିଲେ ଓ କୋଉ ପ୍ରାଇଜ୍‌ଟା କ'ଣ ପାଇଁ, ସେ କଥା ଜମାରୁ ମନେ ରଖିପାରୁ ନ ଥିଲେ ।

ରେବତୀ ଏମ୍. ଏସ୍‌ସି. ପଢ଼ିଲା ବେଳକୁ ଆମେମାନେ ପ୍ରାୟ ସମସ୍ତେ ବଦଳି ଯାଇଥିଲୁ । ଆମ ଭିତରୁ ଅନେକ ବାହା ହୋଇଯାଇଥିଲେ, ମୁଁ କିନ୍ତୁ ଆଇ. ଏ.ରେ ପଢ଼ୁଥିବା ହେତୁ ମୋର ଭବିଷ୍ୟତ ସମ୍ପର୍କରେ ଆମ ଘରେ ସମସ୍ତଙ୍କର ଉଚ୍ଚାଭିଳାଷ ଥିଲା । ତେଣୁ ମୋର ବାହା ହେବାର ସମ୍ଭାବନା ବେଶ୍ ସୁଦୂର ଥିଲା । ରେବତୀ ସେ ଖଣ୍ଡମଣ୍ଡଳର ପ୍ରଥମ ଏମ୍. ଏସ୍‌ସି. ଥିଲା, ତେଣୁ ଆମେମାନେ ରେବତୀ ପାଇଁ ଗର୍ବ କରୁଥିଲୁ । ଅନ୍ୟ ଗାଁର ପିଲାମାନଙ୍କ ଆଗରେ ଆମେ ରେବତୀ ଗାଁର ପିଲା ବୋଲି କହିବା ବାହାଦୁରୀର ବିଷୟ ଥିଲା ।

ରେବତୀ ଏମ୍. ଏସ୍‌ସି. ପାସ୍ କରି ପିଏଚ୍. ଡି. କଲା ଓ ସେତେବେଳେ ଆମ ଗାଁକୁ ଚନ୍ଦନଯାତ୍ରା ଖଣ୍ଡେ ପାଇଁ ଆସିଥିଲା । ହଠାତ୍ ରେବତୀର ମା' ମୋତେ ଡକେଇଥିଲେ ଓ ରେବତୀକୁ ବସ୍‌ଷ୍ଟାଣ୍ଡରୁ ଆଣିବାର ଦାୟିତ୍ୱ ଦେଲେ । ରେବତୀ ସାଙ୍ଗେ ସମ୍ପୃକ୍ତ ହେବାର ଇଚ୍ଛା ବୋଧେ ମୋର ମନ ଭିତରେ କୋଉଠି ଲୁଚି ଥିଲା; କାରଣ ଏ ଦାୟିତ୍ୱ ମୋତେ ଦିଆଯିବା ପରେ ମୁଁ ଖୁବ ଅସ୍ଥିର ଓ ଉତ୍ତେଜିତ ହୋଇଗଲି । ରାତିରେ ବିଭିନ୍ନ ଅଦଭୁତ ସ୍ୱପ୍ନ ଦେଖିଲି, ଯା' ଭିତରୁ ଗୋଟିଏ ସ୍ୱପ୍ନ ମୋର ସଫା ମନେ ଅଛି—ମୁଁ ବସ୍‌ଷ୍ଟାଣ୍ଡରେ ଅନେକ ସମୟ ଅପେକ୍ଷା କରିବା ସତ୍ତ୍ୱେ ବସ୍ ଆସିଲା ନାହିଁ । ସେଥିପାଇଁ ମୁଁ କିଛି ସମୟ ବୁଲାବୁଲି କରିବାକୁ କୁଆଡେ଼ ଚାଲିଗଲି । ରେବତୀ ବସ୍‌ରୁ ଓହ୍ଲାଇ କାହାରିକୁ ନ ପାଇ ପୁଣି ସେଇ ବସ୍‌ରେ ଫେରିଗଲା । ମୁଁ ଫେରିଆସି ଦେଖିଲି ବସ୍ ଚାଲିଯାଇଛି ଓ ରେବତୀ ଫେରିଯାଇଛି । ସକାଳୁ ଉଠି ସ୍ୱପ୍ନରୁ ମୋତେ ଏହି ଶିକ୍ଷା ମିଳିଲା ଯେ, ମୁଁ ବସ୍‌ଷ୍ଟପ୍ ଛାଡ଼ି କୁଆଡେ଼ ଯିବା ଅନୁଚିତ । ତା' ଛଡ଼ା ସ୍ୱପ୍ନଫଳ ବହିରୁ ସ୍ୱପ୍ନର ଅର୍ଥ ଖୋଜିଲି, କିନ୍ତୁ ସ୍ୱପ୍ନ ଫଳବହିରେ ଯେଉଁ ପ୍ରକାର ସ୍ୱପ୍ନମାନଙ୍କର ଅର୍ଥ ଥିଲା, ସେ ସବୁ ଭିତରେ ଏଟା ଆସିଲା ନାହିଁ ।

ଏହାଛଡ଼ା ମୁଁ ରେବତୀକୁ ଭୟ କରୁଥିଲି; କାରଣ ପ୍ରଥମରେ ସେ ପାଠ-ପଢ଼ୁଆ ଝିଅପିଲା ଥିଲା, ଯେଉଁମାନଙ୍କୁ ମୁଁ ଖୁବ୍ ଉଚ୍ଚଗୋଷ୍ଠୀର ବୋଲି ଭାବୁଥିଲି । (ମୋର ଭଉଣୀମାନେ କେହି ସପ୍ତମ ଶ୍ରେଣୀ ଉପରକୁ ପଢ଼ି ନ ଥିଲେ । ପ୍ରକୃତରେ ଜଣେ ଭଉଣୀ ଜମା ଦ୍ୱିତୀୟ ଶ୍ରେଣୀ ଯାଏ ପାଠ ପଢ଼ିଥିଲେ ବି ବର୍ଣ୍ଣମାଳା ସମ୍ପୂର୍ଣ୍ଣ ଭୁଲିଯାଇଥିଲା ) ଦ୍ୱିତୀୟରେ ସେ ମୋଠୁ ଅନେକ ବେଶି ପାଠ ପଢ଼ିଥିଲା ଓ ଗବେଷଣା କରୁଥିଲା । ପିଲାଦିନେ ମୁଁ ବିଭିନ୍ନ ବୈଜ୍ଞାନିକମାନଙ୍କ କଥା ପଢ଼ିଥିଲି ଓ ଗବେଷଣା ସହ ବୈଜ୍ଞାନିକ ହେଇଯିବା କଥା ସମ୍ପୃକ୍ତ ବୋଲି ବୁଝିପାରୁଥିଲି । ତେଣୁ ରେବତୀ ଯେ ଅଳ୍ପ ଦିନରେ ପିଲାଙ୍କ ସାହିତ୍ୟ ବହି ଭିତରକୁ ନିଜ ଫଟୋ ସହ ପାଠ୍ୟ-ପୁସ୍ତକ ବିଷୟ ହେଇ ଚାଲିଆସିବ, ସେ ସମ୍ଭାବନା ମୋ ମନ ଭିତରେ ପ୍ରଚ୍ଛନ୍ନ ଥିଲା ।

ରେବତୀ ନସ୍ରରୁ ଫେରିଲା ପରେ ଏଣେତେଣେ ଅନେଇ ମୋତେ ପ୍ରଥମେ ଚାହିଁବାରେ ଅସୁବିଧା ହେଉ ନ ଥିଲା । ମୁଁ ମୋର ସବୁଠୁ ଭଲ ପ୍ୟାଣ୍ଟ ଜାମା ପିନ୍ଧିଥିଲି । ପ୍ୟାଣ୍ଟର ହେମ୍ ସିଲେଇ ବୋତାମ ପାଖେ ଛିଣ୍ଡି ଯାଇଥିଲା ଓ ତାକୁ ଜାମା ତଳେ ବାଁ ହାତରେ ଘୋଡ଼େଇ ରଖିବାକୁ ଚେଷ୍ଟା କରୁଥିଲି । ତା'ର ଜନକପଣ୍ଡ ଖରୂଆ ଘରରେ ଲାଗିଲା । ଅନେକ ଦିନ ହେଲା ତାକୁ କିଛି ଡାକୁ ନ ଥିବାରୁ ମୁଁ ତାକୁ ରେବତୀ ଡାକିବି କି ନାନୀ ଡାକିବି, ସ୍ଥିର କରି ପାରୁ ନ ଥିଲି; କିମ୍ବା ତୁ, ତୁମେ କି ଆପଣ କହିବି ସେ କଥା ବି ସିଦ୍ଧାନ୍ତ କରିପାରିଲି ନାହିଁ । ତେଣୁ ସମୁଦାୟ କଥୋପକଥନରେ ମୁଁ ଏସବୁ ବ୍ୟବହାର ନ କରି ଯଥାସମ୍ଭବ ସଂକ୍ଷେପରେ କଥାସବୁ କହିବାକୁ ଚେଷ୍ଟା କରୁଥିଲି, ଯଥା : "ଯିବା ?" ଆସିଲା ବେଳେ ଅସୁବିଧା ହେଲା କି ?" "ଟ୍ରଙ୍କରେ କ'ଣ ଅଛି କି ?" ଇତ୍ୟାଦି ।

ଆମେ ଅନେକ ବାଟ ଚୁପ୍‌ଚାପ୍ ଆସିଲା ପରେ ହଠାତ୍ ରେବତୀ ଅଳ୍ପ ଟିକିଏ ବଦମାସି ହସ ହସିଲା ଓ ପଚାରିଲା, "ହଁ, ତୁ ଏଇଠି ସେନାପତି ହୋଇଥିଲୁ, ନାଁ ଥରେ ଯାତ୍ରାରେ ?"

ମୁଁ ଆଶ୍ଚର୍ଯ୍ୟ ହୋଇଗଲି । ସେ କେମିତି ଜାଣିଲା ସେ କଥା ପଚାରିବାକୁ ମୁଁ ଚାହୁଁଥିଲି; କିନ୍ତୁ ତୁ କି ତୁମେ କି ଆପଣ କିଛି କହିପାରୁ ନଥିବାରୁ ଏବଂ 'କେମିତି ଜାଣିଲା ହେଲା !' ଏଟା ନିହାତି ଅଡ଼ୁଆ ଶୁଭୁଥିବାରୁ କିଛି କହିଲି ନାହିଁ । ରେବତୀ ଏ କଥାଟି ମନେରଖିବାର କାରଣ କହିଲା; 'ରହ ରହ କ୍ଷଣେ ବିଶ୍ୱାସ ଘାତକ' କହିବା ଜାଗାରେ 'ରହ ରହ କ୍ଷଣେ ବାଷ୍ପୀୟ ଶକଟ, ଦେଖିବି ଚାଲିକା ଗୁରୁ ଚାନ୍ଦ ପଟ, ଚାନ୍ଦ ମଣେ ତେଣୁ···' ଇତ୍ୟାଦି 'ଚାଲିକାର' ଆଠ ଦଶପଦ କୁଆଡ଼େ ମୁଁ ଗାଇ ଯାଇଥିଲି । ଲୋକମାନେ ମୋର ଏ ଭୁଲ୍ ଜାଣି ପାରି ନ ଥିଲେ ଓ ମୋର ଏଇ ଅନର୍ଗଳ ଡାଇଲଗ୍ ଶୁଣି ବହୁତ ବାହାବା କରି ତାଳି ମାରିଲେ । ରେବତୀ କିନ୍ତୁ ଠୋ' ଠୋ' ହୋଇ ହସିଥିଲା ଓ ଲୋକଙ୍କ ତାଳି ଦେଖି ଆହୁରି ହସିଲା । ଏତିକ କହୁ କହୁ ସେ ଆଉ ଥରେ ଏତେ ଜୋର୍‌ରେ ହସିଲା ଯେ ଯଦି ସେ ଚାଲୁ ନ ଥାନ୍ତା, ତା'ହେଲେ ରାସ୍ତାରେ ବୋଧେ ଗଡ଼ି ଯାଇଥାନ୍ତା । ମୁଁ ରାଗରେ ପାଚିଗଲି ଓ ଭାବିଲି, 'ଅଃ, ପାଠ ପଢ଼ୁଛି ବୋଲି ଏତେ ଫୁଟାଣି, କାହିଁ ଦେଖି ଏତେ ପାଠ ପଢ଼ୁଛି ତ, ବାହା ତ ହେଇପାରୁନି ?' କିନ୍ତୁ ଏ କଥା କହିବାର ସାହସ ମୋର ନଥିଲା । ତା' ନାକ ଝଣ୍ଟାପରି ଠିଆ ଥିଲା, ସେ ଚଷମା ପିନ୍ଧି ଥିଲା ଓ ତା' ସାଙ୍ଗେ ଏଇମିତି ଯାଇ କ'ଣ ପଦେ କହିବାର ସାହସ ରାମ ମିଶ୍ର ବ୍ୟତୀତ କାହାରି ନଥିଲା । ରାମ ମିଶ୍ର ଶିବ ମନ୍ଦିରର ପୂଜକ ଓ ଗଞ୍ଜେଇ ଟାଣି ଟାଣି ପାଗଳା ହୋଇ-ଯାଇଥିଲା । ସବୁଥର ଟେଣ୍ଟେଇ ଟେଣ୍ଟେଇ ଯାଇ ସମ୍ମୁଖରେ ଭୁଲ୍ ମନ୍ତ୍ର ପଢ଼ି

ରେବତୀକୁ ଆଶୀର୍ବାଦ କଲାପରେ, ରେବତୀ ଭ୍ୟାନିଟି ବ୍ୟାଗ୍ ଖୋଲି ଦଶ ପଇସା ବଦଳରେ ଟଙ୍କିଆ ନୋଟ୍‌ଟିଏ ବଢ଼ାଇ ଦେଇ ତାକୁ ଆଶ୍ଚର୍ଯ୍ୟରେ ଚିତ୍‌ପଟାଙ୍ଗ କରି ଦେଇଥିଲା ।

ସେଥର ରେବତୀ ଗାଁରେ ପ୍ରାୟ ତିନି ମାସ ରହିଲା । ସେ ମହୁମାଛିମାନଙ୍କ ଉପରେ ଗବେଷଣା କରୁଥିଲା ଓ ମୁଁ ଗାଁ ଆଖପାଖରେ ଗୁଟେଏଟି ମହୁଫେଣାର ସନ୍ଧାନ କରିଥିଲି । ସାର୍ ରୋନାଲ୍‌ଡ଼୍ ରସ୍ ମଶା ଧରିବା ପାଇଁ ଯେଉଁ ବାଡ଼ିଯୁକ୍ତ ଜାଲି ବ୍ୟବହାର କରୁଥିବାର ଚିତ୍ର ଦ୍ୱିତୀୟ ଶ୍ରେଣୀ ସାହିତ୍ୟ ବହିରେ ଥିଲା, ସେଇ ଜାଲରେ କୌଣସି ରସାୟନିକ ପଦାର୍ଥ ଲଗେଇ, ରବର ତିଆରି ହାତମୋଜା ପିନ୍ଧି ମୁଁ ରେବତୀ ପାଇଁ ମହୁମାଛି ଧରୁଥିଲି । ପ୍ରତି ଦଶଟି ମହୁମାଛି ପାଇଁ ମୋତେ ଗୋଟେ ଲଜେନ୍ସ୍ ଓ ଜହ୍ନବାତିପରି ହସଟିଏ ମିଳୁଥିଲା । ପ୍ରତି କୋଡ଼ିଏଟି ମହୁମାଛିପାଇଁ ମୋତେ ତା' ହାତ ତିଆରି କେକ୍ ଓ ଜେଲି ଖାଇବାକୁ ମିଳୁଥିଲା ଓ ଏପରିକି ବେଳେବେଳେ ପିଠି ଥାପୁଡ଼ା ମିଳୁଥିଲା । ରେବତୀର ମୁଡ୍ କିନ୍ତୁ ସବୁବେଳେ ସମାନ ନଥିଲା । ବେଳେବେଳେ ସେ ଏତେ ଗମ୍ଭୀର ରହୁଥିଲା ଯେ ମୁଁ ଡରିଯାଉଥିଲି । ବିଭିନ୍ନ ସାନ ସାନ କାଚ ବାକ୍ସରେ ସେ ମହୁମାଛିମାନଙ୍କୁ ରଖି ତାଙ୍କ ସଙ୍ଗେ, ସତେ ଯେମିତି ସେମାନେ ମଣିଷ, ସେଇମିତି କଥାବାର୍ତ୍ତା କରୁଥିଲା । ମୋତେ ମଧ୍ୟ ସେ ମହୁମାଛିମାନଙ୍କ ଗତିବିଧି ଓ ଅଭିବ୍ୟକ୍ତି ଅନେକ ସମୟରେ ବୁଝେଇବାକୁ ଚେଷ୍ଟା କରୁଥିଲା । ଯଦିଓ ମୋ ଆଖିକୁ ନାଚୁଥିବା, ହସୁଥିବା, ବୋର୍ ହଉଥିବା ଓ ଡୋଳଉଥିବା ମହୁମାଛିମାନେ ଏକାପରି ଦିଶୁଥିଲେ, ମୁଁ ମୋର ଅଜ୍ଞତା ଦେଖେଇବାକୁ ପ୍ରସ୍ତୁତ ନଥିଲି ଓ ସବୁ କଥା ବୁଝିଯାଉଥିବାର ଛଳନା କରୁଥିଲି । ମହୁମାଛି ଦଂଶିଲା ପରେ ତାକୁ ଭଲ କରିବା ପାଇଁ ସେ ମୋତେ ଗୋଟେ ମଲମ ଦେଇଥିଲା ଯାହାକୁ ମୁଁ ଅନେକ ଦିନ କାଳ ପାଖରେ ରଖିଥିଲି ଓ ସେଥିପାଇଁ ଗାଁରେ ମୋର ସୁନାମ ରଟି ଯାଇଥିଲା ।

ରେବତୀ କାମ ସାରି ଭୁବନେଶ୍ୱର ଫେରିଗଲା । ତା'ର କିଛି ଦିନପରେ ମୋ ପାଖକୁ ଇଂରାଜୀରେ ଲେଖା ଧନ୍ୟବାଦର ଚିଠିଟିଏ ସହ ହଲେ ଟେରିକଟ୍ ଜାମା ପେଣ୍ଟ୍ ଥାନ ପଠେଇଥିଲା । ଏହି ସମୟରେ ସେ ପିଏଚ୍. ଡ଼ି. ପାଇଲା ବୋଲି ଖବର କାଗଜରେ ଆଉଥରେ ଫୋଟୋ ସହ ସମ୍ବାଦ ବାହାରି ଥିଲା । ତା'ର କିଛି ଦିନପରେ ପୁଣିଥରେ ଖବର କାଗଜରେ ଫୋଟୋ ଛପେଇ ରେବତୀ ଆମେରିକା ଚାଲିଗଲା ।

## ॥ ଦୁଇ ॥

ତିନି ବର୍ଷ ପରେ ରେବତୀ ଆମେରିକାରୁ ଫେରୁଥିଲା । ତାକୁ ଦେଖିବାକୁ ମୋର ଇଚ୍ଛା ପ୍ରବଳ ଥିଲା । ରେବତୀ ସମ୍ପର୍କରେ ମୁଁ ଆଉ ଅନ୍ୟମାନଙ୍କ ସହ-ଆଲୋଚନା କରୁ ନଥିଲି, କାରଣ ସେ ମୋର ନିଜ ଲୋକପରି ମୋତେ ଲାଗୁଥିଲା; କିନ୍ତୁ ଗାଁରେ ତା' ବିଷୟରେ ସାନ ସାନ ପିଲାମାନେ ଅନେକ କଳ୍ପନା ଜଳ୍ପନା କରୁଥିଲେ । ସେ ଗୁଣୀଗାରେଡ଼ି ଶିକ୍ଷିତ ଓ ମଣିଷମାନଙ୍କୁ ମନ୍ତ୍ରମାନ୍ତ୍ରି କରି ଦେଉଚି ବୋଲି ଲୋକେ ଭାବୁଥିଲେ । ରେବତୀର ବାପା ରେବତୀ ପାଇଁ ବର ଖୋଜିବା ଅନେକ ଦିନରୁ ବନ୍ଦ କରି ଦେଇଥିଲେ, କାରଣ ତାକୁ ବାହା ହେବାର ଯୋଗ୍ୟତା ଥିବା ଲୋକ ତାଙ୍କ ଜାଣିବାରେ କେହି ନଥିଲେ । ମୁଁ ଏହା ଭିତରେ ବି. ଏ. ପାସ୍ କରି ଚାକିରି ଖୋଜି ଖୋଜି, ନ ପାଇ, ହତାଶ ଓ ବୋର୍ ହୋଇ ବାହା ହୋଇଯାଇଥିଲି । ରେବତୀକୁ ଆରାଧନ କରି ଗୃହିଣୀଟିଏ ପାଇଯିବାର କଳ୍ପନା ମଧ୍ୟ ମୋ ମନରେ ଥିଲା । ଆମ ଗାଁରେ ଲଙ୍ଗଳା, ଶୁଙ୍କୁଟା ଝୁଲ ସରହର ଛୁଆଙ୍କ ସଂଖ୍ୟା ବେଶ୍ ବଢ଼ି ଯାଇଥିଲା ।

ରେବତୀ ଏଥରକୁ ସାମାନ୍ୟ ପତଳା ଓ ଯଥେଷ୍ଟ ଗମ୍ଭୀର ଓ ମୋ ଆଖିରେ ବାଙ୍ଗରା ହୋଇଯାଇଥିଲା । ରାସ୍ତାରେ ସେ ଜମା ହସିଲା ନାହିଁ ଓ ମୋର ସବୁ ପ୍ରଶ୍ନର ଉତ୍ତର ଅତି ସଂକ୍ଷେପରେ ଦେଲା । ସେ ଆମେରିକାରେ ଅସରପାମାନଙ୍କ ଉପରେ ଗବେଷଣା କରିଥିଲା ଓ ଓଡ଼ିଶାକୁ ଫେରି କୌଣସି ଏକ ସାମୁଦ୍ରିକ ଜନ୍ତୁ ଉପରେ ଗବେଷଣା କରିବ ବୋଲି ସ୍ଥିର କରିଥିଲା । ଏହା ଭିତରେ ସେ ମଧ୍ୟ ଅଧ୍ୟାପିକା ହୋଇଯାଇଥିଲା । ସାମୁଦ୍ରିକ ଜନ୍ତୁମାନଙ୍କୁ ରକ୍ଷା କରିବା ପାଇଁ ଥିବା କମିଟିର ଓଡ଼ିଶା ଶାଖାର ସେ ସଭାପତି ଥିଲା । ଏଥିପାଇଁ କଚ୍ଛପର୍ଣ୍ଣ ସମୁଦ୍ରରୁ ଇଲିଶି ମାଛ ଧରିବା ବନ୍ଦ କରିବାପାଇଁ ରାଜ୍ୟ ସରକାରଙ୍କୁ ସେ ଦାବି ଜଣେଇଛି ବୋଲି କହିଲା । (ଏ ସମ୍ବାଦରେ ମୁଁ ଆଦୌ ସନ୍ତୁଷ୍ଟ ହେଲି ନାହିଁ ।) ବର୍ଷେ ଭିତରେ ସେ ଆଉଥରେ ଆମେରିକା ଫେରିଯିବାର ଯୋଜନାରେ ଥିଲା । ତାଙ୍କ ଘର ପାଖେ ପହଞ୍ଚିବା ପରେ ସେ ମୋତେ କାଲି ସକାଳୁ ଆସିବାକୁ କହିଲା ଓ ଇତ୍ୟବସରରେ ମୁଁ ମଧ୍ୟ ତାକୁ ଚାକିରି ନ ପାଇ ବାହାହୋଇ ଯାଇଥିବା କଥା କହିବାକୁ ଭୁଲିଲି ନାହିଁ ।

ପରଦିନ ସକାଳୁ ତାଙ୍କ ଘରେ ପହଞ୍ଚିଲାବେଳକୁ ରେବତୀ ରେଡ଼ି ହୋଇ-ସାରିଥିଲା । ଆମେ ଗାଁ ବୁଲିଲୁ ଓ ଆମକୁ ଦେଖିବା ମାତ୍ରକେ ସାନ ସାନ ପିଲାମାନେ ରେବତୀକୁ ଡାଆଣୀ ବା ସେଇପରି କୌଣସି ଭୌତିକ ଜୀବ ଭାବି ଲୁଚି ପଳେଇଲେ ।

ରେବତୀ ବେଶ୍ ଖୁସି ହୋଇଗଲା ଓ ଦେଖିଲା ପିଲାମାନେ ଲୁଚକାଳି ଖେଳୁଛନ୍ତି । ଗୋଟିଏ ସାନ ପିଲା ଦୌଡ଼ି ଗଲାବେଳେ ରେବତୀ ଆସ୍ତେ ତାକୁ ଗୋଡ଼େଇ ଧରି-ପକେଇବାକୁ ଚେଷ୍ଟା କରିବାର ଛଳନା କରୁ କରୁ ଭୟରେ ପିଲାଟି ନାହିଁ ନ ଥିବା ରଡ଼ି ଆରମ୍ଭ କଲା ଓ ପଡ଼ିଗଲା । ପିଲାଟିର ମା' ଦୌଡ଼ି ଆସି ପିଲାଟିକୁ ନେଇଗଲା-ବେଳେ ବଡ଼ବଡ଼ କରି ରେବତୀକୁ ଗାଳିଦେଲା ।

'ଆରେ କଇଁଫୁଲ ସବୁ କୁଆଡ଼େ ଗଲା ?' ସ୍କୁଲ ପାଖ ପୋଖରୀ ଦେଖି ରେବତୀ ପଚାରିଲା ।

'ଏଇ ଛତର୍ ପିଲାଏ ବାଲତି ଦଳ ଗୁଡ଼ି ଦେଉଛନ୍ତି, ଦେଖୁନୁ, ଯୋଉବର୍ଷ ଗୁଡ଼ିଥିଲେ ସେ ବର୍ଷ ପୋଖରୀ ଫୁଲରେ ଭର୍ତ୍ତି ହୋଇଗଲା; ତୁ ସେତେବେଳେ ଆମେରିକାରେ ଥିଲୁ । ତା'ପର ବର୍ଷକୁ ସବୁ ଚକ ମରିଗଲା ।'

ଆଖଡ଼ାଘର ପାଖରେ ପହଞ୍ଚି ରେବତୀ ହଠାତ୍ ଛିଡ଼ା ହୋଇଗଲା । ଆଗରୁ ଆଖଡ଼ାଘର ବାରଣ୍ଡାରେ କୁମାର ପୂର୍ଣ୍ଣିମାରେ କଇଁଫୁଲ ପାଖୁଡ଼ା, ଡେମ୍ଫ, ଗୁଜୁଲି ଚୂନା, ଅଙ୍ଗାର, ଇଟାଗୁଣ୍ଡ, ଅବିରରେ ଝୋଟି ପଡ଼ୁଥିଲା ଓ ଗାଁ ସାରା ସବୁ ଲୋକ ଭୋଗ ବାଢ଼ୁଥିଲେ । ରେବତୀ ଓ ଆଉ ଅନ୍ୟ ଛୋଟ୍ ଛୋଟ୍ ଲୋକ ଅନେକ ଦିନ ଆଗେ ସେଠି ହାରମୋନିଅମ୍, ଡୁଗି ତବଲା, ମୃଦଙ୍ଗ ଓ ବେହେଲା ସହାୟତାରେ ଚମ୍ପୂ, ଓଡ଼ିଶୀ, ଭଜନ ଓ ପୁରୁଣା ଓଡ଼ିଆ ସିନେମାର ଗୀତ ଗାଉଥିଲେ । ଏବେ ଆଖଡ଼ାଘର ଭାଙ୍ଗି ଯାଇଥିଲା ଓ ତା'ର ଦଖଲ ନେଇ ମକଦ୍ଦମା ଚାଲିଥିଲା । ତା'ର ଭଙ୍ଗା ଖୁଣ୍ଟରେ ଦୁ'ଟା ବଳଦ ବନ୍ଧା ହେଉଥିଲେ । ବାରଣ୍ଡାରେ ଘଷି ପଡ଼ି ହୋଇଥିଲା । ବାରଣ୍ଡାରେ ୩।୪ ବର୍ଷର ପିଲାଟିଏ ନିର୍ଲିପ୍ତ ଭାବରେ ହଗୁଥିଲା ଓ ହଠାତ୍ ଆମକୁ ଦେଖି ଆତଙ୍କରେ ଭେଁ କିନା କାନ୍ଦି ଉଠିଲା ।

ଗାଁ ପଛ ନଈଆଡ଼କୁ ଗଲାବେଳେ ରେବତୀ ପଚାରିଲା 'ବିଡ଼ି ଅଛି ?' ମୁଁ ମୁଣ୍ଡ ଝୁଙ୍କାଇଲି । ଆଗରୁ ମୁଁ ରେବତୀକୁ ଡରୁଥିଲି ଓ ସେତେବେଳେ ସେ ମୋ ବିଡ଼ିପିଆ ଛଡ଼େଇ ଦେଇଥିଲା । ଏବେ କିନ୍ତୁ ରେବତୀ ମୋ ଆଖିରେ ସାନ ଦିଶୁଥିଲା; ଏତଦ୍‌ବ୍ୟତୀତ ମୋର ବାହାଘର ପରେ ମୁଁ ବଡପିଲା ପରି ନିଜକୁ ଭାବୁଥିଲି, ତେଣୁ ରେବତୀ ପାଖରେ ବିଡ଼ି କଥା କହିବା ପାଇଁ ସାହସ କରିପାରିଲି ।

'କ'ଣ ପୁଣି ବିଡ଼ି ପିଇଲୁଣି ?'

'କେତେବେଳେ କେମିତି ।'

'ଆମେ ବଣ ପାଖରେ ବସି ବିଡ଼ି ପିଇବା', ରେବତୀ ଆଖିମାରି କହିଲା ।

'କେଉଁ ବଣ ?'

'କାହିଁକି, ମଶାଣି ପାଖ ବଣ, କି ଡର ମାଡ଼ୁଥିବ କରେ ପିଲାମାନେ ସେଠି, ସେମାନଙ୍କୁ ଦେଖିବା ସେଠି ଭୂତପ୍ରେତ ଅଛନ୍ତି କି ନାହିଁ ?'

ମୋତେ କିନ୍ତୁ ମଶାଣି ପାଖରେ ଏବେ ବି ଡର ମାଡ଼ୁଥିଲା । ମୁଁ ମଶାଣି ପାଖକୁ ଯିବା ପାଇଁ ଅନ୍ୟ ଗୋଟେ କାରଣରୁ ମଧ୍ୟ ଇଚ୍ଛା କରୁ ନ ଥିଲି । ସେଠି ଏବେ ଆଉ ଖାସ୍ ମଶାଣି ନ ଥିଲା । ସେ ଜାଗାକୁ ଚକ୍ରପାଣି ଠାକୁରର କୋଉଁଦାନୁ ଖାନାପୁରୀ ବନ୍ଦୋବସ୍ତରେ ନିଜ ନାଁରେ ପଟ୍ଟା କରେଇ ଚାଷ ଜମି କରେଇ ଦେଇଥିଲା; କିନ୍ତୁ ରେବତୀ ମୁହଁକୁ ଅନେଇ ହଠାତ୍ ମୁଁ ଭାବିଲି ଯେମିତି ରେବତୀ ଏଠି ନାହିଁ, ଖୁବ୍ ଗୋଟେ ଦୂରର କ'ଣ କଥା ଭାବୁଚି । ହଠାତ୍ ସେ ଯେତେବେଳେ ମଣିଷ ନୁହେଁ, କୌଣସି ଅପାର୍ଥିବ ଜୀବଣୀଟିଏ, ସେମିତି ଭାବୁ ଭାବୁ ମୋ ହୃତ୍‌ପିଣ୍ଡ ମୁହୂର୍ତ୍ତିକ ପାଇଁ ଯେତେବେଳେ ବନ୍ଦ ହୋଇଗଲା !

ଯୋଉଠି ଆଗେ ମଶାଣି ଥିଲା, ସେଠି ଏବେ ଖାଲି ବରଗଛଟିଏ ଥିଲା ଓ ତା' ଗୁଣ୍ଡପଟେ ସବୁଜ ଧାନ ଲହଡ଼ି ମାରୁଥିଲା । ରେବତୀ ବରଗଛ ପଟ ସିଧାରେ ଆକାଶକୁ ଅନେଇଲା । 'ଅରେ ହେ', ରେବତୀ କହିଲା, 'ଏ ଗଛଟା ଲମ୍ବା ହୋଇଗଲାଣି କିରେ ? ଧାନ ବି ହୋଇଗଲାଣି, ନାହିଁ ? ଗଛଟା ତ ଏତେ ଫାଙ୍କା ହୋଇଯାଇଚି ! ମଶାଣି ବି ନାହିଁ, ମଶାଣି କୁଆଡ଼େ ଗଲା ?'

ମୁଁ ମଶାଣିର ଅନ୍ତର୍ଦ୍ଧାନ ରହସ୍ୟ ସଂକ୍ଷେପରେ କହିଲି । ରେବତୀ ସମ୍ପୂର୍ଣ୍ଣ ଗମ୍ଭୀର ହୋଇଗଲା । ଆସ୍ତେ ଆସ୍ତେ ଅନ୍ୟମନସ୍କ ଭାବରେ ବରଗଛ ଗୁଣ୍ଡପଟେ କେତେଥର ବୁଲିଲା । କିଛି ସମୟ ପାଇଁ ମୁଁ ସେଠି ଅଛି ବୋଲି ତା'ର ଯିମିତି ଖିଆଲ ନ ଥିଲା । ସେଠୁ ଫେରି ଘର ପହଞ୍ଚିବା ପର୍ଯ୍ୟନ୍ତ ମୋ ସାଙ୍ଗେ ସେ ଆଉ କଥା ହୋଇନଥିଲା ।

ସନ୍ଧ୍ୟାବେଳକୁ ମୁଁ ପୁଣି ରେବତୀ ଘରକୁ ଗଲି । ଆଲୁଅ ଜାଳେଇ ରେବତୀ ଶୋଇବାଘର ଖଟ ଉପରେ ଏକୁଟିଆ ବସିଥିଲା । ମୋତେ ଦେଖି ଲୁଚକାଳି ଖେଳିବାକୁ କହିଲା, ଆମେ ଦି'ବାଜି ଖେଳିଲୁ ପରେ ବୋର୍ ହୋଇଗଲୁ ଓ ଖେଳ ବନ୍ଦ କରି ମୋତେ ବଂଶୀ ବଜେଇବାକୁ କହିଲା । ବସ୍ତୁତଃରେ, ବଂଶୀରେ କମା ଦୁଇଟି ପୁରୁଣା ହିନ୍ଦୀ ଗୀତର ସ୍ୱର ବ୍ୟତୀତ ମୁଁ ଆଉ କିଛି ବଜେଇ ପାରୁ ନ ଥିଲି । ଯଦିଚ ପିଲାମାନେ ସେଇ ଦୁଇଟି ସ୍ୱର ଖୁସିରେ ମୁଁ ରେବତୀ କ'ଣ, ଏସେଇ ତା' ମାଙ୍କଡ଼ ସାନଭାଇପାଇଁ ମଧ୍ୟ ବଜେଇ ପାରିଥାନ୍ତି ଏବେ ମୋର ଅଯୋଗ୍ୟତା ସମ୍ପର୍କରେ ମୁଁ ନିଶ୍ଚିତ ଥିଲି ଓ ବାରମ୍ବାର ମନାକଲି । ରେବତୀ କିନ୍ତୁ ମୋତେ ବାରମ୍ବାର ବାଧ୍ୟ କଲା, ସାନ ପିଲାଙ୍କ ପରି ଅଭିମାନ କଲା ଓ କହିଲା, 'ତୁ ବହୁତ ବଦଳି ଗଲୁଣିରେ, ଛଅବର୍ଷ ଆଗେ କ'ଣ ତୋ ସେବକାମି କଥା ତୁ କାଟି ଦେଇଥାନ୍ତୁ ?' ମୁଁ ଘରକୁ ଦୌଡ଼-

ସାରା ବାଇଁଶୀଟି ଟାଣି ନେଇ ବୃନ୍ଦଟି ଗୀତର ସ୍ୱର ବଜେଇଲା । ରେବତୀ ମୋର ସ୍ତ୍ରୀ କଥା ପଚାରିଲା ଓ ସମାନ୍ତ କାଇଁଫୁଲ ତୋଳିବାକୁ ମନ ହେଲା । ମୋତେ ବାଧ୍ୟ ହୋଇ ମନେପକାଇ ଦେବାକୁ ପଡ଼ିଲା ଯେ, ଏବେ ଆଉ କାଇଁଫୁଲ ଫୁଟୁନାହିଁ ।

ରେବତୀ ସେଦିନ ଅନେକ କଥା କହିଲା, ଯାହା ମୁଁ ପୂରାପୂରି ବୁଝିପାରି ନାହିଁ, କିନ୍ତୁ ଯାହା ବୁଝିଛି ସେଥିରୁ ଏହିପରି, ଆମେରିକାରେ ସେ ଭାରତୀୟ ସମାଜର ଜଣେ କାର୍ଯ୍ୟକାରୀ ସମ୍ପାଦିକା ଥିଲା ଓ ଅନେକ ସମୟରେ ଓଡ଼ିଶୀ ଗୀତ ଗାଉଥିଲା । ସେଠି ଜଣେ ଜର୍ମାନ ଲୋକ ରେବତୀକୁ ବାହା ହେବାକୁ ଚାହୁଁଥିଲା । ରେବତୀ ଡରିଯାଇଥିଲା ଓ ସବୁବେଳେ ସେ ଜର୍ମାନ୍ ଲୋକଟି ପାଖରୁ ଲୁଚି ଲୁଚି ରହୁଥିଲା । ସେ କଲେଜରେ ବିଭିନ୍ନ ସୋସାଇଟିର ଭାଇସ୍-ପ୍ରେସିଡେଣ୍ଟ ଓ ଅଡଭାଇଜର ଅଛି ଏବଂ ତା'ର ସମୟ କେମିତି କଟୁଛି ସେ ଜାଣିପାରୁ ନାହିଁ । ତଥାପି ବେଳେ ବେଳେ ସେ ଭାରି ନିଃସଙ୍ଗତା ଅନୁଭବ କରେ; କିନ୍ତୁ ସେ ନିଃସଙ୍ଗତା ଭାବ ଏତେ ଗଭୀର, ଅସ୍ପଷ୍ଟ ଓ ଜଟିଳ ଯେ ତାକୁ ସେ ବୁଝେଇ ପାରୁନାହିଁ । ଅନେକ ସମୟରେ ସେ ସନ୍ଦେହ କରେ, ପୃଥିବୀର ବିଭିନ୍ନ ନଗରରେ ବୁଲିଲାବେଳେ ଭାବେ, ଅକସ୍ମାତ୍ କେହି ଜଣେ ଅତି ନିକଟ ପରିଚିତ, ଅନ୍ତରଙ୍ଗ ହଠାତ୍ କୁଆଡ଼େ ବହୁତ ଆଗରୁ ସେଦିନ ଅନ୍ତର୍ଦ୍ଧାନ ହୋଇଯାଇ ଦେଖା ହୋଇଯିବ, ଏଇ ଯେମିତି ଠିକ୍ ରାସ୍ତା ମୋଡ଼ ପାଖରେ ସେ ଛିଡ଼ା ହୋଇଥିବ, ଟ୍ରେନ୍‌ରୁ ଓହ୍ଲାଇଲାବେଳେ ପ୍ଲାଟଫର୍ମରେ ଲୋକଗହଳି ଭିତରେ ଠେଲି ଠେଲି ଆସି ଟିକେ ହସି ହସି ଗଲାଯିବ, ଅଥବା ଏଅର୍‌ପୋର୍ଟରେ ସିକ୍ୟୁରିଟି ଚେକ୍‌ର ଠିକ୍ ପୂର୍ବରୁ ହଠାତ୍ ଲୋକଟି ଦେଖି ଦୌଡ଼ି ଆସିବ, ଦରକାର ପଡ଼ିଲେ ରେବତୀ ପ୍ଲେନ୍ ଟିକେଟ ଫେରେଇ ଦେଇ ରହିଯିବ; କିନ୍ତୁ ରେବତୀ ଜାଣେ ସେମିତି କେହି ଲୋକ ନାହିଁ ତ, ଦେଖା ହେବାର ପ୍ରଶ୍ନହିଁ ଉଠୁନାହିଁ । ତା ସତ୍ତ୍ୱେ ସବୁବେଳେ, ମନ ଭିତରେ କୋଉଠି ଏଇ ବ୍ୟାକୁଳ ଅଶାନ୍ତି ଲୁଚି ଲୁଚି ଟକ୍ ଟକ୍ କରୁଥାଏ ।

ହଠାତ୍ ରେବତୀ ବିଛଣାରେ ଗଡ଼ିଗଲା ଓ କାନ୍ଦି ପକେଇଲା । କାନ୍ଦ ଭିତରେ ସେ ଜାଲୁ ଜାଲୁ ହୋଇ କ'ଣ କହିଲା, ମୁଁ ଶୁଣିପାରିଲି ନାହିଁ । ମୁଁ ତା ବାଳ ଆଉଁସିବା ପାଇଁ ହାତ ବଢ଼େଇ ସଙ୍କୋଚରେ ଫେରେଇ ଆଣିଲି । ମୋର ମନହେଲା ତାକୁ କୁଣ୍ଢେଇ ଧରି ଗେଲକରି ବୁଝେଇ ଦିଅନ୍ତି । କ'ଣ ବା ବୁଝେଇ ଥାନ୍ତି; ମୁଁ ନିଜେ ହିଁ କିଛି ବୁଝିପାରୁ ନ ଥିଲି । କେବଳ ମୋଟାମୋଟି ରେବତୀ ବାହା ହୋଇଯିବା ଉଚିତ ବୋଲି ସ୍ଥିର କଲି । କିଛିବେଳ ନିଃଶବ୍ଦରେ କାନ୍ଦିଲା ପରେ, ରେବତୀ ହଠାତ୍ ମୁହଁ ଉପରକୁ ଟେକି ଲୁହ ପୋଛିଦେଲା ଓ ସିଧା ମୋ ମୁହଁକୁ ଅନେଇ ସୁନ୍ଦର୍ ଚିଡ଼ିଲା ପରି ହସଟିଏ ହସିଦେଲା ।

କ'ଣ ମଜାକଥା କହି ରେବତୀକୁ ହସେଇବାକୁ ମୁଁ ଅନେକ ଭାବିଲି, ଦୁଃଖର କଥା, ମୁଁ ନିଜେ ସେମିତି କିଛି ବୁଦ୍ଧିଆ ପିଲା ନ ଥିଲି ଯେ ମୋ ମୁଣ୍ଡକୁ ହସ କଥାଟିଏ ଝଡ଼୍‌କିନା ଆସି ଯାଇଥାନ୍ତା । ତା' ଛଡ଼ା ଆମ ଗାଁରେ ସେମିତି କିଛି ହସକଥା ଘଟୁ ନ ଥିଲା । ଯୋଉ କେତୋଟି କଥାରେ ମୁଁ ଓ ମୋ ସ୍ତ୍ରୀ ଘରରେ କେବେ କେବେ ହସୁଥିଲୁ ସେ ସବୁ ହସକଥା ସାଧାରଣତଃ ଅଶ୍ଳୀଳ ଓ ସେ କଥାଗୁଡ଼ିକ ମୁଁ ରେବତୀକୁ କହିପାରି ନ ଥାନ୍ତି ।

ଏହାପରେ ବାକି ସମୟତକ ରେବତୀ ମୋ ଆଗରେ ଏମିତି କାନ୍ଦି ପକେଇଥିବାରୁ ଅନୁତପ୍ତ ହେଲି । ତା ପରଦିନ ସେ କଲେଜ ଫେରି ଯାଉଥିଲା । ମୁଁ ତାକୁ ବସ୍ ଚଢ଼େଇ ଦବାକୁ ଗଲି । ଆଉ କେବେ ଗାଁକୁ ଆସିବୁ ବୋଲି ମୁଁ ରେବତୀକୁ ପଚାରିଲି । 'ଦେଖିବା, କେବେ ଆସିବା' ରେବତୀ କହିଲା । ମୋତେ କିନ୍ତୁ ଲାଗିଲା ଯେ, ରେବତୀ ଆଉ ଆସିବ ନାହିଁ । ସେ ଯୋଉ ଲୋକକୁ ଖୋଜୁଥିଲା, ସେ ଲୋକଟି ନିଶ୍ଚିତ ଭାବେ ଆମ ଗାଁରେ ନ ଥିଲା । ଏଥର କିନ୍ତୁ ରେବତୀ ପ୍ରତି ମୋର ଆଉ ଈର୍ଷା ଅଥବା ଭକ୍ତି ନ ଥିଲା । ମୋ' ହୃଦୟରେ ତା' ପାଇଁ ଏକ ଅଦ୍‌ଭୁତ କରୁଣା ଭର୍ତ୍ତି ହେଉଥିଲା । ଗାଁ ଦାଣ୍ଡରେ ପାଦ ଠକ୍ ଠକ୍ କରି, ସମୟକୁ ଦମ୍ଭରେ ମୁହଁମୋଡ଼ି ଚାଲିଯାଉଥିବା, ମଶାଣିକୁ ଦେଖି ଭୟରେ ମୂର୍ଚ୍ଛା ହେଇଯାଉଥିବା, ଲୁଚେଇ ଲୁଚେଇ ବିଡ଼ି ଟାଣୁଥିବା ରେବତୀ ଅତି ଅସହାୟ ଭାବେ ଚାଲିଯାଇଥିଲା । (ରେବତୀ ଲୋ, ମୋତେ ଦେଇଦେ ତୋର ଅସହାୟତା, ତୋର ବୟସ, ତୋ ନିର୍ଜନତା, ତୋର ବାର୍ଦ୍ଧକ୍ୟ, ତୋର ହାତ ଗୋଡ଼ର ଦରୁ ଶିକୁଳି । ମୁଁ ତତେ କଇଁଫୁଲ ଦେବି, ମହୁମାଛି ଦେବି, ମୋର ଯାବତୀୟ ଖୁସି ଦେବି, ମୋର ନିର୍ବୋଧତା ଦେବି । ତୁ ଫେରିଆ ନଈକୂଳ ବାଲିରେ ଦୌଡ଼ିବାକୁ, ସମୁଦ୍ରରେ ପହଁରିବାକୁ, ପିନ୍ ପିନ୍ ଖରାରେ ସୂର୍ଯ୍ୟମୁଖୀ ଫୁଲପରି ଚହଲି ଯିବାକୁ । ତୁ ପୁଣି ଥରେ ଛୁଆ ହେଇଯା, ଘୁଙ୍ଗୁର ପିନ୍ଧ, ଥରେ ପାଦ ନଖ ଭୂଇଁରେ ଘଷି ଆଣିଲେ ଅନ୍ତଃଟୋରଅମ୍ବରେ ସେଇ ଲୋକଟି ଚହଲିଯିବ ଯେ ଏତେଦିନଯାଏ ତୋ' ସାଙ୍ଗେ ଲୁଚକାଳି ଖେଳୁଚି; ଦୁଇବାହୁ ପ୍ରସାରିତ କରିଦେଲେ ସମସ୍ତ ନିସ୍ତବ୍ଧ ହେଇ ରହିଯିବ, ଘଣ୍ଟାମାନେ ଓଲଟା ପଟେ ଚାଲିବାକୁ ଆରମ୍ଭ କରିବେ; ଥରେ ନିଃଶ୍ୱାସ ପିଠିରେ ଠିକଣା ଲେଖି ପଠେଇଦେ, ନିଃଶ୍ୱାସ ଖୋଜି ଖୋଜି ସେନା ଆସିବ ଏପରି ବାହ୍ଲାକୁ ଯାହା ସବୁଦିନ କ୍ରମାଗତ ଲହରୀ ପରି ଖେଳୁଥିବ । )

× × × ×

ଏହାର ଅଳ୍ପଦିନ ପରେ ରେବତୀ ପୁଣିଥରେ ଆମେରିକା ଚାଲିଗଲା ବୋଲି ମୁଁ ଖବରକାଗଜରେ ପଢ଼ିଥିଲି ।



# ଡିଡି ଆମର ସାଙ୍ଗ, ଭାରି ଭଲ ସାଙ୍ଗ

ଶମ୍ଭୁ କହିଲା, ସେ ଆଜିକାଲି ଆଉ ରମ୍ ଛୁଉଁ ନାହିଁ । ରମ୍ ଦେଖିଲେ ତାକୁ ବାନ୍ତି ହେଉଛି ।

ସାଧୁ କହିଲା, ରମ୍ ଛଡ଼ା ସେ ଆଉ କିଛି ଛୁଉଁ ନାହିଁ । ଆଉ ସବୁଥିରେ ତା'ର ହ୍ୟାଂଓଭର ରହୁଛି । ପେଟ ଗୋଳମାଳ ହଉଛି । ତା'ଛଡ଼ା ରମ୍ ଛଡ଼ା ଆଉ ସବୁଥିରେ ଲିଭର ସିରୋସିସ୍ ହବାର ଚାନ୍ସ ବେଶି । ସତ କହିଲେ ସ୍ୱାସ୍ଥ୍ୟ ପାଇଁ ରମ୍ ହିଁ ଭଲ ।

ଅନ୍ତତଃ କମ୍ କ୍ଷତିକାରକ ହୋଇଥିବ, ତତ୍ତ ସଂଶୋଧନ କରି କହିଲି ।

ନାଁ ନାଁ ଏଇଟା ସ୍ୱାସ୍ଥ୍ୟ ପାଇଁ ଭଲ, ସାଧୁ ଜିଦ୍ କଲା ।

ମୁଁ ଏ ଗୋଳମାଳକୁ ନମସ୍କାର, କରି ଉଠି ମୋ ଆଡ଼କୁ ଭୀତତ୍ରସ୍ତ ହରିଣୀ-ପରି ଅନେଇ ଆଶ୍ରୟ ମାଗିଲି । ମୁଁ ଭାବିଲି ସେ ମୋ ମତାମତ ମାଗୁଛି, ବିଅର୍ କହିବି ବୋଲି ଭାବିଲି କିନ୍ତୁ ଆରମ୍ଭରୁ ଏତେ ସବୁ ଝିଙ୍ଗାମି ଆରମ୍ଭ ହେଲାଣି ଦେଖି ଡରିଯାଇ ହାତଯୋଡ଼ି କହିଲି, ମୁଁ ଖାଇ ମାଟିପିଣ୍ଡୁଳା ମହାଦେବ, ଯାହା ମୋ ଉପରେ ଢାଳିଲେ ଚଳିବ ।

ମଦ ସ୍ଥିରୀକୃତ ଓ ବନ୍ଦୋବସ୍ତ ହେଲା ପରେ ଶମ୍ଭୁ ତା'ର ଟ୍ରକ୍ କଥା କହିଲା । ମାସେ ହେଲା ସେ ଗୋଟେ ନୂଆ ଡ୍ରାଇଭର ରଖିଛି । ଆଗ ଡ୍ରାଇଭର ତା'ର ଗୋଟେ ଟ୍ରିପ୍‌ରୁ ପାଞ୍ଚ ହଜାର ଟଙ୍କା ନେଇକି ଆସିଲା, ଟ୍ରକ୍‌ନେଇ ଦରଜନ କ୍ଲିଅଡ଼େ ହ୍ୟାଃପ ମାଡ୍ରାସ୍ ରୁଟ୍‌ରେ ଗାଏବ୍ ହେଲା, ଟଙ୍କା ଦେଲା ନାହିଁ, କହିଲା ଚୋରି ହୋଇଗଲା, ପୁଣି ପଚ୍ଛକୁ କହିଲା, ପଇସା ଗାଡ଼ି ରିପେୟାରିଂରେ ଖର୍ଚ୍ଚ କରି ଦେଇଛି, ରସିଦ୍ ଆଣିବାକୁ ଭୁଲିଯାଇଛି, ସେଥିପାଇଁ ମିଛରେ ହଜିଯାଇଛି ବୋଲି କହିଲା । (ସେ ଭୁଲିଯାଇଥିଲା ଯେ ସେ ପଇସା ଚୋରି ହୋଇଯାଇଛି ବୋଲି ଆଗେ କହିଥିଲା ।) ଏତେସବୁ ମିଛ କହିଲା ପରେ ସେ ଡ୍ରାଇଭରକୁ ବାହାର ନ କରି ଆଉ କରିଥାନ୍ତା କ'ଣ ? ଅନ୍ତତଃ ମିଛ ସାଙ୍ଗେ ମିଛ ଯଦି ମ୍ୟାଚ୍ କରୁଥାନ୍ତା ତା'ହେଲେ କଥା ନଥିଲା, କାରଣ ଜଣେ ଲୋକ ଲୁଚେଇ ଚୋରେଇ ପାଞ୍ଚ ହଜାରେ ପଟେ ନେଇଯାଉ, କି ମାଗିକରି ନେଇଯାଉ, ଠକେଇକି ନେଇଯିବ, ଏ ଅପମାନ କିଏ ବରଦାସ୍ତ କରିବ ?

ଡିଓ ତା’ ପକେଟ୍‌ରୁ ଦରମା ଟଙ୍କାତକ ବାହାର କଲା ଓ ଶମ୍ଭୁକୁ କହିଲା, ଏତକ ରଖିଥା, ‘ଅବସ୍ଥା ସୁଧୁରିଲେ ଦେବୁ ।’ ଶମ୍ଭୁ ଭଲେନ ପରି ହସିଲା ଓ କହିଲା, ‘ମାହାରା କ’ଣ ହାଓ୍ୱା ଖାଇ ବୁଲିବୁ ?’ ଶମ୍ଭୁ ମାରିବାକୁ ଧମକେଇଲା, ବାହା ହୋଇପଡ଼ ଓ ଟଙ୍କାଟା ରଖିଦେ ବୋଲି ଉପଦେଶ ଦେଲା । ଏଥର ଡିଓ କ’ଣ କହିବ କହିବ ହେଲା, ତାକୁ କେହି କୁହେଇ ଦେଲେ ନାହିଁ । ମୁଁ ମୋର ନୂଆ ବଦଳି ଜାଗା କଥା କହିଲି, ଅସୁବିଧା, କ୍ୱେଟରଭାଡ଼ ମିଳୁନାହାନ୍ତି, ଡାକ୍ତରଖାନା ଦଉଡ଼ ଦଉଡ଼ ମୁଁ ଅଳମିକ ଷ୍ଟାଣ୍ଡାର୍ଡ଼ର ରନର୍ ହୋଇଗଲିଣି, ଏସବୁ କଥା କହିଲି । ଡିଓ କହିଲା, ଯେ କିଛି ଟଙ୍କା ଦେବ ମୋତେ ମୁଁ ଗୋଟେ ସ୍କୁଟର କିଣିଦେଲେ କାମ କିଛି ହାଲୁକା ହୋଇଯିବ । ମୁଁ ତାକୁ ମାରିବାକୁ ଧମକେଇଲି, ବାହା ହୋଇପଡ଼ ଓ କିଛି ଟଙ୍କା ରଖିଦେ ବୋଲି ଉପଦେଶ ଦେଲି ।

ଡିଓ ପୁଣି କ’ଣ କହିବାକୁ ଯାଉଛି, ସାଧୁ ତାକୁ ଚୁପ୍ କରାଇ ତା’ ଦୁଃଖ କଥା କହିଲା । ଆଜିକାଲି ସାଧୁ ଆମ ସାଙ୍ଗେ ମିଶୁ ନାହିଁ । ତା’ ବାପ ସାଙ୍ଗେ ମିଶି ବ୍ୟବସାୟ ବେପାରରେ ଲାଗିଛି । ସବୁଥରପରି ଡିନି ଗୁଟି ପେଗ୍ ପରେ ସେ କାନ୍ଦିବାକୁ ଆରମ୍ଭ କଲା । କ୍ରମେ ଖେଳକଥା, ଏଠିକାର ନୂଆ ଏସ୍. ପି. କଥା, ସିନେମା କଥା, ୟୁନିଭର୍ସିଟିର ପଲିଟିକ୍ସ (ସାଧୁ ସେଠି ଗୋଟେ କ’ଣ ସିନେଟ୍ ସିନେଟ୍‌ରେ ଅଛି, ହାୟ, ହାୟ !) ସ୍ତ୍ରୀ ଓ ପିଲାଙ୍କ କଥା ପଡ଼ିଲା । ଡିଓକୁ ସବୁଥର ପରି ଜଲଦି ବାହା ହୋଇପଡ଼ିବା ପାଇଁ ଉପଦେଶ ଦିଆଗଲା । ଏହା ଭିତରେ ଡିଓ ବାଧ୍ୟ କରି ତା’ ଦରମା ଟଙ୍କା ଶମ୍ଭୁ ହାତରେ ଦେଲା ଓ ତା’ ସ୍କୁଟର ମୋତେ ଦେଇଦେଲା । ଏସବୁ ପରେ ଡିଓ ଆମ ପାଇଁ ଖାଇବାକୁ ଆଣିବାକୁ ଗଲା ଓ ଆମେ ତାକୁ ତା’ ପଛରେ ବଡପାଗଲ ବୋଲି ଅଭିହିତ କଲୁ ଓ ସେ ବାହା ନହେଲେ ରକ୍ଷା ନାହିଁ, ଏକଥା ମଧ୍ୟ ଘୋଷଣା କଲୁ । ସବୁଥରପରି ଘରକା ବାହାରକୁ ଅନେକ ସାମ୍ନାରେ ଥିବା ଘରର ବଡ଼ ପାଚେରିରେ ବଡ଼ ବଡ଼ ଅକ୍ଷରରେ ଲେଖାହୋଇଥିବା “ଦେଖ ଭଗବାନ ଆସୁଚନ୍ତି, ଭଗବାନ ଆସିବା ସମୟରେ ତମେ କ’ଣ ଏମିତି ପାପରେ ବୁଡ଼ିରହିଥିବ ? ତାଙ୍କ ଆସିବା ସମୟରେ ତାଙ୍କୁ ମୁହଁ ଦେଖାଇବ କିପରି ?” ପଢ଼ି ହସିଲୁ ଓ ସାଧୁକୁ କହିଲୁ, “ସାଧୁ ଏବେ ଏ ବ୍ୟବସାୟ ବେପାର ଛାଡ଼, ନହେଲେ ଭଗବାନ ଆସିବା ସମୟରେ ତାଙ୍କୁ କେମିତି ମୁହଁ ଦେଖେଇବୁ ?” ଏଥର ସାଧୁ ଜୋର୍‌ରେ ନିଜକୁ ଧିକ୍‌କାର ଧିକ୍‌କାର କାନ୍ଦିଲା, ମଶାରି ବାଡାରେ ମୁଣ୍ଡ ପିଟିଲା ଯେ ବାଡ଼ା ତା’ ଉପରେ ପଡ଼ିଲା ଓ ସେଇଠୁ ଯାଇ ତା’ କାନ୍ଦ ବନ୍ଦ ହେଲା । ଶମ୍ଭୁ କହିଲା, “ଅସଲ ପାପୀ ଏଇଟା, ସେଥିପାଇଁ ମଦ ପିଇଲେ ସତକଥା ବାହାରୁଚି, କାନ୍ଦୁଚି ।”

ଖାଇବାବେଳେ ଡିଓ କାନ୍ଧରେ ମୁଣ୍ଡରଖି ସାଧୁ ପୁଣି କାନ୍ଦିଲା, ଓ ତା’ ଲୁହ ଓ ଲାଳରେ ଡିଓର କାନ୍ଧ ଓଦା କରିଦେଲା । ଯିବା ଆଗରୁ ଡିଓ ତା’ ହାତଘଣ୍ଟା

ସାଧୁଙ୍କୁ ଦେଇଗଲି, କାରଣ ସାଧୁ ତା' ଘଣ୍ଟା ହାତକୁ ଦେଇଥିଲା ଓ ତା'ନଡ଼ା ସେ ଘଣ୍ଟାର ଦାମ୍ ଷାଠିଏ ଟଙ୍କାରୁ ଅଧିକା ନୁହେଁ । ସବୁଥର ପରି ଭିଡ଼ କିଛି ଖାଇଲା ନାହିଁ । ତା'ପରେ ବନ୍ଧୁମିଳନ ପର୍ବ ଉଦ୍‌ଯୋଗ ହେଲା, ମୁଁ ନିଜ ସହରକୁ ଫେରି ଆସିଲି ତା' ପରଦିନ ।

ଆରଥରେ ଅମେ ବସିବା ବେଳକୁ ଛଅମାସ ପରେ । ସବୁଥର ପରି ବରହମପୁରରେ ପହଞ୍ଚି ମୁଁ ଶନ୍ତୁକୁ ଫୋନ୍ କଲି । ସାଧୁଙ୍କୁ ଓ ଭିକ୍ରିକୁ ଠାବ କରିବା କାମ ତା'ର, ଏଥର ଶନ୍ତୁ ବହୁତ ଡେରିରେ ଆସିଲା । ତା' ନିଜର ଡ୍ରାଇଭର ସମସ୍ୟା ସରିନଥିଲା, ଭିକ୍ରି କୁଆଡ଼େ ଲାପତ୍ତା ଥିଲା ପାଇବାକୁ କଷ୍ଟ ହେଲା । ରାତି ବହୁତ ହୋଇଯାଇଥିଲା, ସେଥିପାଇଁ କି କ'ଣ ପାର୍ଟି ବଡ଼ ମାନ୍ଦା ହେଲା । ଭିକ୍ରି ଫଟ୍-କରି ତା' ପକେଟରୁ କ'ଣଟିଏ କାଢ଼ି ଉପହାର ଦେଲା ନାହିଁ, ଯେମିତି ସେ ସବୁଥର ଦିଏ । ଏକଥା ମୁଁ ତାକୁ ସୁଚେଇ ଦେଲି ଓ ଥଟ୍ଟା କରି କହିଲି, "ଜଣାପଡ଼ୁଚି ଭିକ୍ରି ପ୍ରେମ ଫ୍ରେମରେ ପଡ଼ିଯାଇଛୁ ।"

ସମସ୍ତେ ହଠାତ୍ ଚୁପ୍ ହୋଇଗଲେ । ପୁଣି କଥାବାର୍ତ୍ତା ଚାଲିଲା, ମଝିରେ ଭିକ୍ରି କହିଲା ତା' ପାଖେ ଗୋଟି 'ଶିବାସ୍ ରିଗାଲ୍' ଅଛି, ହେଲେ ସେ ଆଣିନାହିଁ, ଯଦିଓ ସେ ଜାଣେ ମୋତେ ବର୍ଷେ ଆଗରୁ ଗୋଟେ ଶିବାସ୍ ରିଗାଲ ଦେଇଥିଲା, ମୁଁ ତା'ର ଭୂରିଭୂରି ପ୍ରଶଂସା କରିଥିଲି; ଏ କଥା ମୁଁ ମନେପକେଇ ଦେଲି, କିନ୍ତୁ ଭିକ୍ରି ତଥାପି ମୋତେ ଦେଇଟା ଦେବାର ନାଁ ଧରିଲା ନାହିଁ । "ତୁ ତ ଏକଦମ ଅଲଗା ହୋଇଗଲୁଣି", ଏକଥା କହିବା ପରେ ବି ଭିକ୍ରିର କୌଣସି ଭାବାନ୍ତର ହେଲା ନାହିଁ ।

ସାଧୁ ଅକାରଣେ ରାଗିଲା । କହିଲା, ତମେ ଗଲେ ସବୁ ହିପୋକ୍ରାଟ୍ । ସାଙ୍ଗ ସାଙ୍ଗ ହଉଚନ୍ତି ଦେଖିଲାବେଳକୁ ମତଲବ ଓଳିତଲେ ଲୁଚ୍ଚା ହଉଚନ୍ତି । ହ୍ୟାଃ ଶନ୍ତୁକୁ ଦେଖ ସବୁବେଳେ ଟ୍ରକ୍‌ଡ୍ରାଇଭର, ହେଲପର୍, ଷ୍ଟାଫ୍‌ର ମୁକ୍ତିଆର କଥା ନେଇ କାନ୍ଦୁଚି । ଆଉ ତୁ ତ ତୋର ସ୍ତ୍ରୀ ଲୁଥିସିଲି, କ୍ୱାର୍ଟର ବଦଳି, ସରକାର, ପଲିଟିସିଆନ୍ କଥା ଧରି କାନ୍ଦୁଚୁ । ମୁଁ ବୃରିପେର୍ ଧଇଲେ କାନ୍ଦିଲି, ଆଉ ତମେ ମୋତେ ମାରି କି ନମାର । ଆଉ ଏ ଶଳା ଭିକ୍ରିକୁ ଦେଖ କାହାର କ'ଣ ଟିକେ ହେଲେ ତା' ଡ୍ୟାସ୍ ସୁଦ୍ଧା ତରଳିଯାଏ ଗଲା ବାହା ହୋଇଗଲା ଚୁପ୍‌କରି ଚୋରଙ୍କପରି ସେ ଆମକୁ ଜଣେଇଲା ସୁଦ୍ଧା ନାହିଁ । ମାସେ କାଳ କୁଆଡ଼େ ଗାଏବ ହେଲା, କ'ଣ ହେଲା, କ'ଣ ହେଲା ବୋଲି ଆମେ ବ୍ୟସ୍ତ ହେଲୁ ସେ ଦେଖିଲା ବେଳକୁ ମାଇପକୁ ଧରିକି ବୁଲୁଚି ।

ତା' କଥା ସରିଲାବେଳକୁ ସେ ଷ୍ଟେସନ୍‌ରେ ପହଞ୍ଚି ଯାଇଥିଲା, ତେଣୁ ସେ କାନ୍ଦିଲା । ଶମ୍ଭୁକୁ କହିଲି, ତୁ ସାଥିକୁ ସମ୍ଭାଳ, ମୁଁ ଏ ଭଣ୍ଡ ବ୍ରହ୍ମଚାରୀ ସାଙ୍ଗେ ଟିକେ ଗ୍ରୀନ୍‌ରୁମ୍‌ରେ କଥାହୁଏ । ଉତ୍ତମ ତଳକୁ ମୁହଁ ପୋତି ବସିଥିଲା, ମୁଁ ତାକୁ କୁଣ୍ଢେଇ ପକେଇଲି । କହିଲି, ବଢ଼ିଆ କରୁଚୁ । ବାହା ହେଉଛୁ ବହୁତ ବଢ଼ିଆ କରୁଚୁ । ଆଉ ସେକଥା କାହାକୁ ନ କହୁଚୁ, ଆହୁରି ବଢ଼ିଆ କରୁଚୁ । ସବୁବେଳେ ଆମେ ସାଙ୍ଗ ସାଙ୍ଗ ହଉଚୁ, ତୋର ଗୋଟାଏ କଥା ଆଜିଯାଏ ଭଲକରି ବୁଝିଲୁ ?

ଝିଅକୁ ଉତ୍ତମ କେତେଦିନ ହେଲା ଜାଣିଲାଣି । ଶମ୍ଭୁ ବି ଦେଖିଥିଲା ତାକୁ କୋଉ କାଳେ ପ୍ରଥମ ଥର, ହାଇଦ୍ରାବାଦ ସାଙ୍ଗହେଇ ସେମାନେ ଫିଲ୍ମ ଫେଷ୍ଟିଭାଲ ଯାଇଥିଲେ । ଶମ୍ଭୁ ବି ଜାଣିପାରିଲା ନାହିଁ । ସବୁବେଳେ ତ ତେଣେମେଣେ ଭକ୍‌ଗ୍ରେପ୍ କଟେଇବେ, କେତେବେଳେ ସିଟି ଅଉଁସି ଦେବେ ନାହିଁ । ତା' ଭଉଣୀ ଯେବେ ବାହାହେଇ ଚାଲିଗଲା, ଉତ୍ତମକୁ ଘରେ କାନ୍ଦ ମାଡ଼ୁଥାଏ, ସେ କହିଲା, ଏବେ ଆଉ ଘରକୁ ଅନେଇବାକୁ ମନ ହଉନାହିଁ, କେମିତି ଘରକୁ ଯିବି, କାହିଁକି, ହେଲେ ସେ ବାତର୍ ପଞ୍ଚାକ ତାକୁ ଆଶ୍ୱାସନା ଦେବେ କ'ଣ, ଓଲଟି କହିଲେ, ଶଳା ସ୍ତ୍ରୈଣ ହଉଛୁ, ଦିଅ ତା' ହାତଗୋଡ଼ ବାନ୍ଧିପକାଅ ।

ମୁଁ କହିଲି ଉତ୍ତମ ବଢ଼ିଆ କରୁଚୁ, ଏ ସଙ୍ଗମେଳ ବି ଗୋଟେ ମାୟାଜାଲ, ଯଦିଓ ପୁଅପିଲାଏ ଭାବିବାକୁ ସୁଖପାଆନ୍ତି ଯେ ଏଇମିତି ଦଳାଦଳ ପୁଅଙ୍କ ସାଙ୍ଗେ ବୁଲିବାଟା ଭାରି ଗୋଟେ ପୁରୁଷପଣିଆ ଓ ସ୍ୱାଧୀନତା, ନିଜ ଚେର କିନ୍ତୁ ଘରେ ରଖିଦେଇ ଅସିଥାନ୍ତି । ଆମେ ସବୁ ହିପୋକ୍ରାଟ୍ ।

ଉତ୍ତମ କହିଲା, ସେ ଏବେ ବି ତା'ର ପ୍ରଥମ ସ୍ତ୍ରୀ କଥା ମନେପକେଇ ଦୋଷରେ ଘାଣ୍ଟିହେଉଛି । ସେ କାହିଁକି ଘାଣ୍ଟି ହଉଛି ମୁଁ ଜାଣିଥିଲି; କିନ୍ତୁ ଆଉଥରେ ଦୋହରେଇବା ପାଇଁ କହିଲି, "ଦେଖ ଯାହା ଗଲା ଗଲା, ଚାରିବର୍ଷ କି ପାଞ୍ଚବର୍ଷ ହେଲା ତୁ ଡବଲ ହେଲୁଣି, ଯେତିକି ମନସ୍ତାପ କଲୁଣି, ଯଦି ତୋର ସ୍ତ୍ରୀକୁ ହତ୍ୟାବି କରିଥାନ୍ତୁ, ତା'ହେଲେ ବି ସେ ପାପ ଧୋଇ ଯାଇଥାଆନ୍ତା ।" ସ୍ତ୍ରୀ ମରିଯିବାବେଳେ ଆସନ୍ନପ୍ରସବା ଥିଲା, ଉତ୍ତମ ଦୂରରେ ଥିଲା, କାମରେ ବ୍ୟସ୍ତରହି ଅସି ନଥିଲା, କାମ ମାନେ ପୁଣି କମ୍ପାନି କାମ, ଏମିତି କିଛି ସ୍ୱାର୍ଥତ୍ୟାଗ, ଦେଶସେବା, ଗରିବଙ୍କ ପାଇଁ ଉପକାର କି ଆଉ କୋଉ ମହାନ୍ କାମ ନୁହେଁ, କମ୍ପାନିର ସେଲ୍‌ସ୍ କାମ, ଟାର୍ଗେଟ୍ ଏଚିଭମେଣ୍ଟ, ଟାର୍ଗେଟ୍ ଏଚିଭମେଣ୍ଟ; ଏ ମାନ୍ତ୍ରାରେ ଯେ ଦୀକ୍ଷିତ ହେଇ ଜାଣେ । ସ୍ତ୍ରୀ ବିଚରା ପିଲା ଜନ୍ମ କରିବାକୁ ଯାଇ ମରିଗଲା, ଖବର ପାଇ ଉତ୍ତମ ଆସି ପହଞ୍ଚିଲା

ବେଳକୁ ଶବଦାହ କାମ ସରିଲାଣି, ଶଳାଅର ଯୋଉ ଲୋକଟା ଗୁଳଗୁଳ କରୁଥିଲା, କଥାବାର୍ତ୍ତା କରୁଥିଲା, ଯାହାକୁ ତନ୍ନତନ୍ନ କରି ଖୁଁଜା ହେଉଥିଲା, ସେ ଏବେ ମୃତ ହୋଇସାରିଥିଲା, ଏମିତି ମୃତ ଯେ, ମୃତର ସାକ୍ଷୀ ନଥିଲା । 'ସେ ମୋତେ ବହୁତ ଦୋଷ ଦେଉଥିବ ନା ?' ଏ ପ୍ରଶ୍ନଟି ସେ ଘରେ ସମସ୍ତଙ୍କୁ ପଚାରିଲା, ସମସ୍ତେ ଆଶ୍ୱାସନା ଦେବା ପାଇଁ କହିଲେ, ନାଁ ନାଁ, ତୋତେ ସେ ଦୋଷ ଦେଉନାହିଁ ହେଲେ ଉତ୍ତ୍ର କହିଲା, ସେ ଯଦିବା ଦୋଷ ଦେଉଥିବ ସେ କଥା କ'ଣ ଜୀଏ ସତରେ ତାକୁ ଆଉ କହିବ, ସମସ୍ତେ ନିଷ୍ଠୁର ଲୁଚାଉଛନ୍ତି ଓ ପ୍ରକୃତ କଥା ସେ ଆଉ ଜାଣିପାରିବ ନାହିଁ । ମୁଁ ତା' ପିଠିରେ ହାତ ପକାଇଲି, ମନ୍ତ୍ରୀଂରେ ଥିଲେ ଦେହ ବନ୍ଧ/ବେନ୍ତା ହୋଇଲେ ମରଇ ଠୁ ଆରମ୍ଭକରି ମୋତେ ଦେଖ ମୁଁ ତ କହୁଥିଲି ଜୀବନରେ ଏତେ ଦୁଃଖ ଯେ କେହି ଜନ୍ମ ହେବାହିଁ ଅନୁଚିତ, ମୁଁ ଏକ ନୁହେଁ ଚାରିପିଲାର ବାପା, ଦର୍ଶନ କଥା ଛାଡ଼, ଫେମିଲି ପ୍ଲାନିଂର କଥା ବୁଝିବା ମୁଁ ମାନୁନାହିଁ ପର୍ଯ୍ୟନ୍ତ ବୁଝେଇଲି, ଉତ୍ତ୍ର କମେ ଅଶ୍ୱସ୍ତ ହେଲା, ତା' ମୁହଁ ସାନପିଲାର ମୁହଁପରି ହୋଇଗଲା, ଯେମିତି ସବୁବେଳେ ହୁଏ ଓ ତା'ପରେ ଉତ୍ତ୍ର ଶୋଇପଡ଼ିଲା । ସାଧୁ ସ୍ୱା'ଭିତରେ ଶୋଇ-ପଡ଼ିଥିଲା ।

ତା'ପରେ ଶମ୍ଭୁ ଓ ମୁଁ ବାହାରକୁ ଆସିଲୁ; ଶମ୍ଭୁ କହିଲା, "ଉତ୍ତ୍ର ତୋତେ ନନ୍ଦି ବାହା ହୋଇଗଲା, ତୋତେ ଖରାପ ଲାଗୁନି ?" ମୁଁ କହିଲି, "ଓଲଟି ବଚିଆ ହୋଇଛୁ, ଝିଅର ଧଉଳ ନଦର ବାହା ହେଲା, ସେଇଟା ବଡ଼ କଥା, ସମ୍ପୂର୍ଣ୍ଣ-ଦାତବ୍ୟ-ଅନୁଷ୍ଠାନ ହୋଇ ରହିଲା ନାହିଁ, ସେଇଟା ବଡ଼ କଥା ହେଲା ।"

କିନ୍ତୁ ଭିତରେ ତା'ର ଏଇ ବଦଳିଯିବା ମୋତେ ଭଲଲାଗିଲା ନାହିଁ । ସତେକି ପୁଣ୍ୟର ସଂସାରରୁ ସେ ଇତର ଲୋକଙ୍କ ସଂସାରକୁ ଓହ୍ଲାଇ ଆସିଲା । ଏ କଥା ମୁଁ ଶମ୍ଭୁକୁ କହିଲି । ଶମ୍ଭୁ କହିଲା, "ଆମେ ତ ତା' ପଛେ ସବୁବେଳେ ଏଇଥିପାଇଁ ଲାଗିଥିଲେ, ଏବେ ସେ ସେମିତି ହେଇଗଲା ବୋଲି ଆମର ଚାହିଁନ ଦୁଃଖ । ମୁଁ ବି ତା'ର କାରଣ ଜାଣି ନାହିଁ, ହେଲେ ଭଲ ଲାଗୁନାହିଁ ତ । ହେଲେ ବି ବଡ଼ ଅପମାନ ହେଲାରେ ସାଙ୍ଗ ମେଳରେ । ଦ' ବର୍ଷ ହେଲା ସେ ବାହାହେବ ବୋଲି ଠିକ୍ କଲାଣି, ଆମକୁ ଲାଜରେ ଜଣେଇଲା ନାହିଁ । ସତେକି ତା' ପ୍ରଥମ ସ୍ତ୍ରୀ ପ୍ରତି ଅପମାନ ହୋଇଯିବ, ଭେଷଡ଼ି ବୁଦ୍ଧି ଛଡ଼ା ଏଗୁଡ଼ା କ'ଣ ?"

ତା'ପରେ ମୁଁ କହିଲି, "ଚାଲ ସେ ଶଳାର ସ୍ତ୍ରୀକୁ ଦେଖିବା । ଶମ୍ଭୁ ଟ୍ରକ୍ ମାଲିକ, ତା ହୃଦୟ ବି ଟ୍ରକ୍ ପରି ବୃହଦାକାର, ସାଙ୍ଗେ ସାଙ୍ଗେ କହିଲା, ଚାଲ । ଉତ୍ତ୍ର ଘରେ କିଏ ଜଣେ ଆଶ୍ରିତ ଏବେ ବି ରହୁଥିଲା ଓ କହିଲା ମ୍ୟାଡ଼ାମ୍ (ଆମେ ହସିଲୁ, ଶଳା

ତାଙ୍କର ସ୍ତ୍ରୀ ମ୍ୟାଡ଼ାମ୍ କେବେଠୁ ହେଲେଣି ?) ଆସିବେ କ'ଣ ? ମୁଁ କହିଲି, 'କହିଦେ ତାଙ୍କର ଜଣେ ସାଙ୍ଗ ବହୁତ ଦୂରରୁ ଆସିଚନ୍ତି । ତାଙ୍କୁ କ୍ୟାନ୍‌ସର୍ ହୋଇଛି, ସେ ଆଉ କେବେ ଦେଖିପାରିବେ ନାହିଁ ।'

'ମ୍ୟାଡ଼ାମ୍' ଆସିଲେ । ଅମେ ଠିଆ ହୋଇପଡ଼ି ନମସ୍କାର କଲୁ । ମ୍ୟାଡାମ କଥାଟି ଆଉରି ହାସ୍ୟାସ୍ପଦ ଲଗିଲା । କାରଣ ତାଙ୍କର ସ୍ତ୍ରୀର ମୁହଁ ଏକଦମ୍ ପିଲାକିଆ ଥିଲା, କିନ୍ତୁ ପେଟ ବଡ ଥିଲା, ତା'ର ଖୁବ୍ ଶୀଘ୍ର ପିଲା ହବାର ଥିଲା । ଅମେ ନମସ୍କାର କରି ବାହାରକୁ ଚାଲିଆସିଲୁ ।

ମୋର ରାଗ ବୋମା ପରି ଫୁଟିଲା । ମୁଁ କହିଲି, 'ଉଡ଼ି ତ ପୂରା ହିପୋକ୍ରାଟ୍ ବାହାରିଲା । ପ୍ରଥମ ସ୍ତ୍ରୀର ଦୁଃଖରେ ବାହାହୋଇ ପାରିବ ନାହିଁ ପାରିବ ନାହିଁ ବୋଲି ମୁଣ୍ଡ ପିଟୁଥିଲା, ନ କହି ବାହା ହୋଇଗଲା, ଦୁଃଖ ନାହିଁ, ହେଲେ ସ୍ତ୍ରୀ ପ୍ରେଗ୍‌ନେଣ୍ଟ୍ ଏତେଦିନରୁ ପ୍ରେଗ୍‌ନାଣ୍ଟ କରି ରଖି ବାହା ହେଉ ନଥିଲା, କେତେ ଦୁଃଖ ଏ ଝିଅଟି ଭୋଗି ନଥିବ, ଇତ୍ୟାଦି ଇତ୍ୟାଦି । ମୋର ରାଗ ବଢ଼ି ବଢ଼ି ଚାଲିଲା, ମୁଁ କ୍ରମେ ଉଡ଼ିର ବାପା ମା' ଖାନ୍‌ଦାନି ପିତୃପୁରୁଷ ସମସ୍ତଙ୍କୁ ଗାଳିଦେଲି ।

ଶମ୍ଭୁ ହଠାତ୍ ଆଉ ସହି ପାରିଲା ନାହିଁ । ସେ ମୋତେ ଶୋଧିଲା; ମୁଁ ଖାଲି ଗୋଟେ ମୋରାଲିଷ୍ଟ ହେଉଛୁ, ମୋର ଟ୍ରାକ୍ ରେକର୍ଡ କ'ଣ ? ଅମେ ଅନ୍ଧାରରେ "ଦେଖ ଭଗବାନ ଅସୁଚନ୍ତି, ଭଗବାନ ଆସିବା ସମୟରେ ତମେ କ'ଣ ଏମିତି ପାପରେ ବୁଡ଼ି ରହିଥିବ ? ତାଙ୍କ ଅସିବା ସମୟରେ ତାଙ୍କୁ ମୁହଁ ଦେଖାଇବ କିପରି ?" ଲେଖାଥିବା କାନ୍ଥରେ ମୁତିଲୁ । ଶମ୍ଭୁ କହିଲା, "ଗୋଟେ କଥା କହୁଚି, କହି ନଥାନ୍ତି, ତୁ ଉଡ଼ିକୁ ବହୁତ ଗାଳିଦେଲୁ, ସେଥିପାଇଁ ସହିପାରିଲି ନାହିଁ କହୁଚି ।' କାହାରିକୁ କହିବୁ ନାହିଁ । ଉଡ଼ିଟା ଶଳା ମଣିଷ ନୁହେଁ ରେ ସଇତାନ୍ । କି ଭଗବାନ କେଜାଣି ? ଉଭୟେ ମୋତେ ସମାନ ଲାଗନ୍ତି, ଅମଣିଷଗୁଡ଼ାକ । ଅମେ ସବୁ ମଣିଷ ।"

ମୁଁ ଅନ୍ଧାରରେ ଜୋର୍‌ରେ ମୁଣ୍ଡ ହଲେଇଲି । ଶମ୍ଭୁ କହିଲା, ଏ ଟୋକିର ପ୍ରେମ ଉଡ଼ି ସାଙ୍ଗେ ନ ଥିଲା, ଉଡ଼ି ସାଙ୍ଗେ ସାଙ୍ଗ ଥିଲା । କାହା ସାଙ୍ଗେ ଥିଲା ତୋତେ କହିବି ନାହିଁ, ଭାବ ଯେ ଆମ ଭିତରୁ ଜଣେ । ଯେମିତି ପ୍ରେଗ୍‌ନାଣ୍ଟ ହେଇଗଲା ଉଡ଼ି ବାହା ହେଇପଡ଼ିଲା । ସାଙ୍ଗଟା ତ ।

ଶମ୍ଭୁର କଥା ମୋ ମୁଣ୍ଡ ଭିତରେ ସହଜେ ପଶୁନାହିଁ । ମୁଁ କାନ୍ଥର ପୋଷ୍ଟରକୁ ଅନେଇଛି, ଅଧା ପରିସ୍ରା କରିଛି, ପୋଷ୍ଟର ଅନ୍ଧାରରେ ପଢ଼ିବାକୁ ଚେଷ୍ଟା

କରୁଛୁ ଓ ଶମ୍ଭୁର କଥା ବୁଝିବାକୁ ଚେଷ୍ଟା କରୁଛୁ । କାହ୍ନୁ ଦେହରୁ, ଯେଉଁଠି ଭଗବାନ ଶବ୍ଦ ଲେଖା ହୋଇଥିଲା, ସେଇଠୁ ଭଗବାନ ଧୀରେ ଧୀରେ ଆବିର୍ଭୂତ ହେଉଥିଲେ, ଯଦିଓ ତାଙ୍କର ମୁହଁ ନଥିଲା । ମୁଁ କହିଲି, "କ'ଣ ଭଗବାନ ସାହେବ, କ'ଣ ଗୋଟେ ପାପ କରିଛନ୍ତି କି, ଉଡ଼ିକୁ ଦେଖା କରିବାକୁ ମୁହଁ ଆପଣଙ୍କର ନାହିଁ ଯେ ?" ତା'ପରେ ଠୋ' ଠୋ' ହସିଲି, ଶଳା ମୋର ସାଙ୍ଗଟା ଭଗବାନଙ୍କୁ ଡରେଇ ଦେଲା, ମୁଁ ଗପ କରିବି ନାହିଁ କି ?



# ସାବିତ୍ରୀ ସତ୍ୟବାନ୍ ଓ ତରଣୀସେନ୍ ଦାସ୍

ଗାଁରେ ପ୍ରଥମେ ଯେତେବେଳେ ମୁଁ ନୂଆ ନୂଆ ଯାତ୍ରା ଦେଖିଲି, ସେନାପତି ଓ ରାଜାମାନେ ଢଣ୍ ଢଣ୍ ଢଣ୍ ଢଣ୍ ଢଣ୍ ଢଣ୍ ବାଜାର ତାଳରେ ଷ୍ଟେଜ୍ ଚମକେଇ ଦେଲେ, ସେତେବେଳେ ମୋର ଇଚ୍ଛା ହେଲା ମୁଁ ବଡ଼ ହେଲେ ନିଶ୍ଚୟ ଯାତ୍ରାରେ ମିଶିବି ଓ ସେନାପତି ବା ଅନ୍ତତଃପକ୍ଷେ କଟୁଆଳ (ଯାହାର ଡ୍ରେସ୍ ସେନାପତିର ଡ୍ରେସ୍‌ଠୁ ଟିକେ ଖରାପ ହେବା ବ୍ୟତୀତ, ସେ ଆଉ କୌଣସି ପ୍ରକାରେ ନ୍ୟୂନ ନଥିଲା) ହେବି । ଯଦିଚ ଏହା ନ ହୋଇପାରେ, ତା'ହେଲେ ଅନ୍ତତଃ ଦଳ ରାଜାଟିଏ ଖୋଜି ତା' ପାଖରେ ସତ ସେନାପତିଟିଏ ହେବି । ଯେତେବେଳେ ସର୍କସରେ ହାଡ଼ହାଡ଼ୀ କ୍ଷୀଣକାୟ ରିଂମାଷ୍ଟର ଗୋଟେ ଦୁର୍ଦ୍ଧାନ୍ତ ବାଘଛୁଆଁକୁ ପ୍ରିୟ ନେଉଳଛୁଆ ବୋଲି ଛଳନାକରି ପଡ଼ିଆଯାକ ଲଟ୍ଟୁପରି ଘିର୍‌ଘିର୍ ବୁଲେଇ ଆଣିଲା, ମୁଁ ସେଇଠି ହିଁ ସିଦ୍ଧାନ୍ତ କଲି, ବଡ଼ ହେଲେ ରିଂମାଷ୍ଟର ହେବି । ପଣା ସଂକ୍ରାନ୍ତିରେ ଡାହୀମାନେ ଯେତେବେଳେ କଡ଼ମଡ଼ କରି ମାଟି ଘୋଡ଼ାକୁ ଖାଉ ଖାଉ ଅତି ସୁସ୍ୱାଦୁ ଖାଦ୍ୟ ଖାଉଥିବାର ତୃପ୍ତି ମୁହଁରେ ଫୁଟେଇଲେ, ପବନରେ ଉଡ଼ିଲେ ଓ ନିଆଁ ଉପରେ ନିର୍ଲିପ୍ତ ଭାବରେ ଚାଲିଲେ, ମୁଁ ଭାବିଲି ଡାହୀଟିଏ ହୋଇ ପାରନ୍ତି ନାହିଁ ? ବର୍ମା ଖଣିରେ କାମ କରୁଥିବା ରାଧୁ ରାଉତ ଯୋଉଦିନ କହିଲା ଯେ, ବର୍ମାରେ ଗୋଟେ ଜାଗା ଅଛି ଯେଉଁଠି ଚାଲିଲାବେଳେ ଗୋଡ଼ ତଳେ ଲାଗେ ନାହିଁ, ଛୁଁକୁଛୁଁ ଶୂନ୍ୟକୁ ଉଠିଯାଏ, ସେତେବେଳେ ମୁଁ ସ୍ଥିର କଲି ବଡ଼ ହେଲେ ବର୍ମା ଯିବି, ଖଣିରେ କାମ କରିବି । ଏତଦ୍ଦୁଦେଶ ବିଭିନ୍ନ ବୟସ/ସମୟରେ ଯଥାକ୍ରମେ ସିନେମା ହିରୋ, କ୍ରିକେଟ୍ ଖେଳାଳି, ସ୍କୁଲ ମାଷ୍ଟର (ତା'ହେଲେ ମୁଁ ଯେତେ ମାଡ଼ ଖାଇଥିଲି, ସେ ସବୁର ପ୍ରତିଶୋଧ ପିଲାମାନଙ୍କ ଉପରେ ନେଇଥାନ୍ତି) କଲେଜ ପ୍ରେସିଡେଣ୍ଟ୍, କୌଣସି ନିର୍ଦ୍ଦିଷ୍ଟ ବାଳିକାର ପ୍ରେମିକ, ୟୁନିଭର୍ସିଟିର ବେଷ୍ଟ୍ ଗ୍ରାଜୁଏଟ୍ ଓ ଏକ ସମୟରେ ଥେଇ ଥେଇ ନାଚୁ ନାଚୁ ଗୀତ ଗାଇ ପାରୁଥିବା ଶବର ପିଲା ଇତ୍ୟାଦି ହେବାର ଅଭିଳାଷ ପୋଷଣ କରିଥିଲି, ହୋଇପାରି ନଥିଲି,

ଓ ଏହିପରି ଅବଶୋଷ ଅଳ୍ପ ବହୁତ ମୋ ମନରେ ଅଛି ବା ଥିଲା, କିନ୍ତୁ ମୋ ଜୀବନରେ ଗୋଟିଏ ଅବଶୋଷ, ଯାହା ମୋ ଜୀବନଠୁ ବଡ଼ ହୋଇ ଦାଉ ଦାଉ କରି ମୋ ଆଖି ଆଗରେ ଭାସୁଅଛି; ସମ୍ଭବତଃ ଜୀବନଯାକ ଭାସୁଥିବ, ତା'ହେଲା ମୁଁ ଜୀବନରେ ତରଣୀସେନ୍ ଦାସ ହୋଇପାରିଲି ନାହିଁ ।

ତରଣୀସେନ୍ ଦାସଙ୍କୁ ମୁଁ ସ୍ୱଚକ୍ଷୁରେ ଦେଖିନାହିଁ, ଗଳ୍ପ ଶୁଣିବାର ବୟସ ହେଲା ଦିନଠୁ ତରଣୀସେନ୍ ସମ୍ପର୍କରେ ମୁଁ ଏପରି କାହାଣୀ ଶୁଣିଅଛି, ଯାହାକୁ ବିଶ୍ୱାସ କରିବାକୁ ବାଧେ । ହଠାତ୍ ସନ୍ଧ୍ୟାବେଳେ ଗାଁ ଆଖଡ଼ା ଘରେ ବା ଠାକୁରାଣୀ ଗଛ ମୂଳରେ, ନ ହେଲେ ପୋଖରୀ ହୁଡାରେ ବୁଢ଼ା ବୁଢ଼ା ଲୋକ ଆରମ୍ଭ କରନ୍ତି—ପିଲେ ! ତରଣୀସେନ୍ ଦାସ୍ କେମିତି ଜମିଦାରଙ୍କୁ ଠକେଇଦେଇ ଶୁଣିଛ ? ନା ଆମେମାନେ ଶୁଣିନୁ । ଆଗରୁ ଶୁଣିଥିଲେ ବି ଶୁଣିନୁ (ଆମ ଗାଁରେ କେହି ରଜା ରାଣୀ ଗପ କହୁନଥିଲେ) ଏଇ କଥାଗୁଡ଼ିକ ଭିତରୁ କେତେକ ଏତେ ବାଡ଼ୁଫୁସିଆ, ଅସମ୍ଭବ ଓ କପୋଳକଳ୍ପିତ ଯେ, ଏଗୁଡ଼ିକ ପ୍ରକୃତରେ ତରଣୀସେନ୍ ଦାସ୍ ବିଷୟରେ କି ନୁହେଁ ସେଥିରେ ମୋର କିଛି କିଛି ସନ୍ଦେହ ଅଛି । ଏହି ସନ୍ଦେହ ଐତିହାସିକମାନଙ୍କର ମଧ୍ୟ ଥାଏ, ଯେମିତି, ଯଦିଓ ୧୮୦୩ ଖ୍ରୀ: ଅ:ରେ ଦକ୍ଷିଣ ବୀର ଫିରଙ୍ଗି ଫଉଜଙ୍କ ହାତରେ ଗଜପତି ଗୌଡ଼େଶ୍ୱର ନବକୋଟି ଇତ୍ୟାଦି ଇତ୍ୟାଦି ରଜା ପରାସ୍ତ ହେଲେ, ତଥାପି କ'ଣ କୋଉଠି ସାରୁଗଛ ପତ୍ର-ଛତା ତଳେ ବେଙ୍ଗ ଟିଏ ନିଜକୁ ରଜା ବୋଲି ଘୋଷଣା କରି ଚାଲି ନଥିଲା ? ଏଇପରି ଅବିଶ୍ୱାସ୍ୟ କଥାମାନଙ୍କ ଭିତରେ କୁହାଯାଏ ଯେ ଥରେ ଜଣେ ସାଇବାଣୀ ତାଙ୍କ ପ୍ରେମରେ ପଡ଼ିଗଲା ଓ ସାଇବାଣୀର ଆଶା ସଫଳ ନହେଲେ ସେ ତରଣୀସେନ୍ ଦାସଙ୍କୁ ଗୁଳି କରି ମାରି ଉଡ଼େଇ ଦେବ ବୋଲି ଧମକେଇଲା । ହେଲେ ତରଣୀସେନ୍ ତା' ଘର ଭିତରକୁ ଯିବ କିମିତି ? ସେ କୁଆଡ଼େ ନିଜକୁ ଉକୁଣିଟିଏ କରିଦେଇ ଧୋବଣୀ ମୁଣ୍ଡରେ ପଶି ସାଇବାଣୀ ଘର ଭିତରକୁ ଚାଲିଗଲା । ସେଠୁ ସାଇବାଣୀ ମୁଣ୍ଡକୁ—ଉକୁଣୀମାନେ କେମିତି ମୁଣ୍ଡରୁ ମୁଣ୍ଡକୁ ଡିଅନ୍ତି ସେ କଥା କେବଳ ଉକୁଣିମାନେ ଜାଣନ୍ତି—ଡେଇଁଗଲା ଓ ସାଇବାଣୀ ଶୋଇବା ଘରେ ପଶିଯାଇ କବାଟ ବନ୍ଦ କରି ଦେଲା ବେଳକୁ ନିଜ ରୂପ ପ୍ରକାଶ କରିଦେଲା । ଏ କଥାଟା ନିଶ୍ଚୟ ଅତିରଞ୍ଜିତ ପୁଣି ମନ୍ଦ ଉଦ୍ଦେଶ୍ୟ ଥିବା ଲୋକଦ୍ୱାରା, କାରଣ ତରଣୀସେନ୍ ଯେ ନିଜକୁ ଉକୁଣି ପ୍ରଭୃତି ଜୀବରେ ରୂପାନ୍ତରିତ କରିବାରେ ଅକ୍ଷମ ଥିଲା, ସେକଥା ନୁହେଁ, କିନ୍ତୁ ସେ ସେ ନିଜକୁ ଗୋଟେ ସାମାନ୍ୟ ଉକୁଣି, ବାଘ ନୁହେଁ କି ସିଂହ ନୁହେଁ କି ଅତି କମ୍‌ରେ କଳିଆ କୁକୁର ନୁହେଁ, ଗୋଟେ ଉକୁଣିରେ ରୂପାନ୍ତରିତ କରିଥିବ, ଏଇଟା କାହିଁକି ମୋର ବିଶ୍ୱାସ ହଉନି ।

ସେଇମିତ ତରଣୀସେନ୍‌ର ଜନ୍ମ ସମ୍ବନ୍ଧରେ ଅନେକ କଥା ଶୁଣାଯାଏ । କେତେକଙ୍କ ମତରେ କୌଣସି ଗାଁରେ ଫେରିବାଲାଟିଏ ମାସ ମାସ ଧରି ଘରକୁ ଫେରୁ ନଥିଲା । ସେଇ ଗାଁରେ ଗୋଟିଏ ଗୁଣିଆର ଫେରିବାଲା-ସ୍ତ୍ରୀ ସାଙ୍ଗେ ଖରାପ ସମ୍ପର୍କ ଥିଲା । ଫେରିବାଲାର ସ୍ତ୍ରୀ ହଠାତ୍ ଜାଣିଲା ଯେ, ତା' ଘଇତା ଅନେକ ଦିନ ଧରି ଘରକୁ ଫେରିନଥିବା ସମୟରେ ତା'ର ପାପଗର୍ଭ ହୋଇଯାଇଛି । ଗୁଣିଆଟି ମନ୍ତ୍ର ବଳରେ ନିର୍ଦ୍ଧାରିତ ସମୟ ପୂର୍ବରୁ ପିଲାଟିକୁ ଜନ୍ମ କରେଇ ଦେଲା ଓ ହଠାତ୍ ସ୍ୱା'କୁ ଠାକୁରାଣୀ ମନ୍ଦିରରୁ ପାଇଛି ବୋଲି ପ୍ରଚାର କଲା । ପିଲାଟି ଠାକୁରାଣୀଙ୍କ ଦୂତ, ତେଣୁ ତାକୁ ଗାଁରେ ରଖିବା ବିପଦ ବୋଲି ସ୍ଥିର କରି ଗାଁବାଲା ପିଲାଟିକୁ ନେଇ ଗୋଟେ ଖିରସ୍ତାନ ଅନାଥାଶ୍ରମରେ ଛାଡ଼ି ଦେଇ ଆସିଥିଲେ ।

ଅନ୍ୟ କେତେକଙ୍କ ମତରେ ତରଣୀସେନ୍ ଦାସ୍ ପ୍ରକୃତରେ ପାଖ ଗାଁର ଜମିଦାରଙ୍କ ପୁଅ; କିନ୍ତୁ ବିଲାତ ଯାଇ ଫେରିଆସିଲା ପରେ କେତେକ ଶୁଦ୍ଧୀକରଣ କର୍ମ କରିବାକୁ ସେ ଅରାଜି ହବାରୁ ଗାଁର ପଞ୍ଚ ତାକୁ ଗାଁକୁ ଆସିବାକୁ ନିଷେଧ କରିଥିଲେ । ଖିରସ୍ତାନ ହୋଇଯାଇଥିବା ପାଇଁ ହଉ କି ଯୋଉଥିପାଇଁ ହଉ, ତରଣୀସେନ୍ ଦାସ୍ ବେଶ୍ ଢେଙ୍ଗା, ଗୋରା ଓ ତାଗଡ଼ା ହେଲା । ଭଲ ପାଠ ପଢ଼ୁଥିଲା; ଅନେକ ଅଲୌକିକ ଘଟଣାଦ୍ୱାରା ଶିକ୍ଷକମାନଙ୍କୁ ଚକିତ କରିପାରୁଥିଲା । ଯଥା : ଆକାଶରେ କେତେ ତାରା; ସେକଥା ଅନେଇ ଦେଇ ଫଟାଫଟ୍ ଗଣି କହି ଦେଉଥିଲା । ଏଥିରେ କେହି ଅରାଜି ହେଲେ, ସାଙ୍ଗେ ସାଙ୍ଗେ ବାଜି ମାରିବାକୁ ଡାକୁଥିଲା । ଅନ୍ୟ ଯେ କେହି ଗଣିଲାବେଳେ ଦି'ଚାରିଟା ତାରା ନିଶ୍ଚୟ ଭୁଲରେ ଛାଡ଼ି ଯାଉଥିଲେ, ଆଗପଛ ଭୁଲ କରୁଥିଲେ, ଏ ମୁଣ୍ଡରୁ ସେମୁଣ୍ଡ ଗଣିବା ଭିତରେ ନିଶ୍ଚେ ଦି'ଚାରିଟା ନୂଆ ତାରା ଉଦୟ ହୋଇ ଦି'ଚାରିଟା ପୁରୁଣା ତାରା ଅସ୍ତ ହୋଇଯିବେ, ତେଣୁ ଅନ୍ୟ ଯେ କେହି ଗଣିଲା ଭିତରେ ଦି'ଚାରିଟା ଭୁଲ ହବା ନିଶ୍ଚିତ । ଆଲ୍ଲାଉଦ୍ଦିନ୍ ଖିଲିଜିଙ୍କର ଦାଢ଼ି ଥିଲା କି ନାହିଁ ଓ ତା'ହେଲେ କୋଉ ରଙ୍ଗର ଥିଲା, ମାରିଓ ଦ୍ୱୀପପୁଞ୍ଜର ଅଧିବାସୀମାନେ ସାପ ମାଂସ ଖାଆନ୍ତି କି ନାହିଁ, ବେବିଲୋନିଆନ୍‌ମାନଙ୍କର ପ୍ରଥମ ରଜା କିଏ ଥିଲେ, ତିନିହଜାର ପାଞ୍ଚଶହ ତେଇଶରେ ଦୁଇଲକ୍ଷ ଏକୋଇଶି ହଜାର ତିନି ଗୁଣି, ସେଥିରୁ ସତେଇଶି ଫେଡ଼ି ବର୍ଗ ମୂଳ କେତେ, ଇତ୍ୟାଦି ଅନେକ ସମ୍ପୂର୍ଣ୍ଣ ଜଟିଳ ଓ ଅଦରକାରୀ ପ୍ରଶ୍ନର ଉତ୍ତର ସେ ଆଖିପଲକରେ କମ୍ପ୍ୟୁଟର୍ ପରି ଦେଇପାରୁଥିଲା । ସେତେବେଳେ ଅବଶ୍ୟ କମ୍ପ୍ୟୁଟର୍ ବାହାରି ନଥିଲା ।

ତରଣୀସେନ୍ ଦାସ୍ ବିଲାତରୁ ଫେରି ଓକିଲାତି ଆରମ୍ଭ କଲାବେଳକୁ ଆମ ଜିଲ୍ଲାଯାକ ସମସ୍ତେ ତା' କଥା ଅଳ୍ପ ବହୁତେ ଜାଣି ସାରିଥିଲେ । ଆମ ଜିଲ୍ଲା

ଲୋକଙ୍କର ଅନ୍ୟ ଯାହା ସୁଗୁଣ/ଦୁର୍ଗୁଣ ଥାଉ ପଛେ, ଜଣେ ଭଲ ଓଡ଼ିଆର ପ୍ରତିଭା ଚିହ୍ନିବାରେ ସେମାନେ ଆଦୌ ଭୁଲ୍ କରୁ ନ ଥିଲେ । ଯୋଉ କେହି ସେ ସ୍ଥାନକୁ ଯାଏ, ସେଥିରେ ତା'ର କହିବା କିଛି ନାହିଁ; ଯେହେତୁ ଗୋଟେ ଜଣା କଥା ଥିଲା । ଭାରଣୀଦେବୀନ୍ ବିରୁଦ୍ଧରେ କିଛି ଲୋକ କୁତ୍ସାରଟନା କଲେ, ଯଥା: ସେ ବିଶ୍ୱରପତି-ମାନଙ୍କୁ ଗୁଣିଗାରେଡ଼ିରେ ବଶ କରି ରଖିଥାଏ । ପ୍ରକୃତ କଥା ହେଉଛି, ସେ ଏମିତି ଏମିତି ତାଗଡ଼ା କଥାମାନ କହେ ଯେ, ଯେ କୌଣସି ବିଶ୍ୱରପତି ନ ଶୁଣି ରହିପାରେ ନାହିଁ ।

ମୁଁ ଏଇଠି କହିରଖେ ଯେ, ପ୍ରତ୍ୟେକ ଗାଆଁର ଗୋଟେ ଗୋଟେ ନିର୍ଦ୍ଦିଷ୍ଟ ଗୌରବଜନକ କଥା ଥାଏ, ଯେମିତି ପାପଡ଼ାହାଣ୍ଡି ଗାଁ'ରେ ମହାପ୍ରଭୁ ରାମଚନ୍ଦ୍ର ଦାନ୍ତ ଘଷିଥିଲେ (ଓ ତମେ ଯଦି ବିଶ୍ୱାସ ନ କରିବ, ତା'ହେଲେ ସେମାନେ ତମକୁ ଗୋଟେ ଅତି ପଙ୍କୁଆ ପୁରୁଣା ଗଡ଼ିଆ ଦେଖେଇ ଦେବେ, ଯୋଉଠି ଦାନ୍ତ ଘଷିସାରି ରାମଚନ୍ଦ୍ର ମୁହଁ ଧୋଇଥିଲେ ।) ମୋ ମାମୁଘର ଗାଁରେ କୁଆଡ଼େ ଗୃଷ୍ଟି ଝୁଣ୍ଟିଆ ଲୁଚିଥିଲେ ଓ ଯାହା ଘରେ ସେ ଲୁଚିଥିଲେ ସେମାନଙ୍କ ବଂଶଧରମାନେ ଏବେ ବି ସ୍କୁଲରେ ଭାରତର ସ୍ୱାଧୀନତା ଆନ୍ଦୋଳନ ଅଥବା ସିପାହୀ ବିଦ୍ରୋହ ପଢ଼ା ହେଉଥିବେଳେ ଅନେକ ଅସ୍ତବ୍ୟସ୍ତ ହେଇ, ସମୁଦାୟ କ୍ଲାସ୍ ଆଗରେ 'ସାର୍ ଆମ ଘରେ ଗୃଷ୍ଟି ଝୁଣ୍ଟିଆ ଲୁଚିଥିଲେ' ନ କହି ରହିପାରୁ ନଥିଲେ । ଯଦିଓ ସାର୍ ଏକଥା ଭଲକରି ଆଗରୁ ଜାଣିଥିଲେ, ତଥାପି 'ପିଲାମାନେ, ଶୁଣିଲ ?' ବୋଲି ସମ୍ପୂର୍ଣ୍ଣ ଆଶ୍ଚର୍ଯ୍ୟ ହେଇଯାଉଥିବାର ଛଳନାକରି କହୁଥିଲେ । ସେଇପରି, ଆମ ଗାଁରେ ଲୋକେ ବିଭିନ୍ନ ମକଦ୍ଦମା, କଚେରି, ଓକିଲ, ସାକ୍ଷୀ, ପ୍ରମାଣ ଓ ତତ୍‌ସମ୍ପର୍କୀୟ ସାହସିକ ଓ ରୋମାଞ୍ଚକର କାର୍ଯ୍ୟକଳାପର ବାହାଦୁରୀରେ ଗଦ୍‌ଗଦ ହେଇଯାଉ-ଥିଲେ । କହିବା ବାହୁଲ୍ୟ ଆମ ଗାଁରେ କେବଳ ଗୋଟିଏ ପାଗଳା ଲୋକ (ସେ ଏଡ଼େ ପାଗଳା ଯେ ନିଜ ନାଁ କି ବାପା ନାଁ ମନେ ରଖିପାରେନି, ସେ ଆଉ କେମିତି କରିବ କ'ଣ ?) ଯେ ସବୁବେଳେ ଯ୍ୟାଟଡ଼ ସ୍ୟାଡେ ବୁଲେ, ତାକୁ ଛାଡ଼ିଦେଲେ ଆଉ ସମସ୍ତଙ୍କର କିଛି ନା କିଛିହେଲେ ମକଦ୍ଦମା ଚାଲିଥିଲା । ଏପରିକି ଗୋଟେ ଜମିହୀନ ଅନ୍ଧ ଭିକାରୀକୁ ଥରେ ପାଖ ଗାଁର ଜଣେ ଲୋକ 'ହଇରେ କଣା, ଦଶୁନାହିଁ' ବୋଲି କହୁଥିବାରୁ, ଭିକାରୀଟି ମାସକର ଭିକମୁଠି ବଞ୍ଚେଇ, ତାକୁ ବିକ୍ରି ହେଇ ପଇସାରେ ମାନହାନି ମକଦ୍ଦମା କରିଥିଲା ଓ ଟଙ୍କାଟେ କ୍ଷତିପୂରଣ ପାଇଥିଲା । ଏଇ କଥାରେ ଆମେମାନେ ପାଖ ଗାଁର ପିଲାଙ୍କ ବାହାସ୍ଫୋଟକୁ ଦାବି ଦେଇ ପାରୁଥିଲୁ ।

ଆମ ଗାଁରେ ହଡଆ ବୋଲି ଚଷାଟିଏ ଥିଲା । ତା'ର ପାଞ୍ଚମାଣଖଣ୍ଡେ ଭଲ ଜମି, ଭଲ ଖଞ୍ଜା, ଗୁହାଳ ଭର୍ତ୍ତି ଗାଈ ବଳଦ, ପୁଅ୍ରା୯ ପିଲାଛିଲା ଓ ସବୋପରି

ଲକ୍ଷ୍ମୀମାନଙ୍କେ ସୁନାନାଙ୍କ ଝିଅଟିଏ ଥିଲା, ଯା ନାଁ ହାବଳୀ । ହଡ଼ିଆ, ସେ କଟକର କାଗଜରେ ସତ୍ୟବାନ୍ ହୋଇ ପଶୁଚି, କାହାର ସୁଖରେ କି ଦୁଃଖରେ ନ ଥାଏ; କିନ୍ତୁ ମଣିଷ ହବୁବେଳେ ମଣିଷ । ଜଣେ ଶିଷ୍ୟ, ବିଶେଷତଃ ପାଖପଡ଼ଶାଙ୍କ ଶିଷ୍ୟ ଦେଖିଲେ ଆଉ ପାଞ୍ଚଜଣ ସହିପାରନ୍ତି ନାହିଁ । ହଡ଼ିଆର ଶିଷ୍ୟ ଦେଖି ତାକୁ କେହି କେହି ସହିପାରିଲେ ନାହିଁ । ପାପିଲିପୁର ଗାଁରେ ଶବର ଗୁଣିଆଟିଏ ଥିଲା, ତାକୁ ଯାଇ ନେଇ ଆସିଲେ ( ଆଉ କେତେକଙ୍କ ମତରେ ସେମାନେ ଆସାମରୁ ଗୋଟେ କାମାକ୍ଷୀ ଦେଶୀୟ ଗୁଣିଆ ନେଇ ଆସିଥିଲେ ) ଓ ଗୁଣି କରିଦେଲେ । ସେ' ପରେ ହଡ଼ିଆର ଖରାପ ବେଳ ପଡ଼ିଲା ଜାଣ । ଦେଖୁ ଦେଖୁ ଭଲ ଲୋକଟା ହଡ଼ିଆ, ହସ୍ତ ହସ୍ତ ପୋଖରୀପାଣି ସାର ଫେରୁଚି, ତା' ଅଣ୍ଟା ଚହଳିଗଲା, ପଡ଼ିଗଲା ସେ ପଡ଼ିଗଲା; ସେ ଆଉ ଦଶଦିନ ବିଛଣାରୁ ଉଠିପାରିଲା ନାହିଁ । ଯେତେବେଳେ ବା ଉଠିଲା, ଏତେହେଁ ସବାନ୍ ଭେଣ୍ଡିଆଟାକୁ ଦେଖ, ସିଧା ଛିଡ଼ା ହୋଇପାରିଲା ନାହିଁ, ଆଉ ହଳବଳଦ କି ମୂଲମଜୁରିକୁ ପାରିଲା ନାହିଁ । ତା' ସ୍ତ୍ରୀକୁ ବାଣ ମାରଦେଲେ ତ, ହାବଳୀ ରାତିଯାକ ସ୍ୱପ୍ନ ଦେଖିଲା ଘରେ ନିଆଁ ଲାଗିଛି, ରାତି ଅଧରେ ଉଠି ଚାଲିସି, ଗରା, ବାଲଟି ଧରି ଘରଯାକ ପାଣି ଢାଳୁଥିବ ଆଉ ପୋଖରୀକି ପାଣି ଅଣିବାକୁ ଦୌଡ଼ୁଥିବ । ତା' ବଳଦ ହଳକ ଫାଟୁଆ ରୋଗରେ ମରିଗଲେ, ଦାମୁଡ଼ି ହଳକ ଗୁହାଳ ଘରେ ପଶି ଖାଲି ଧକେଇଲେ । ତାଙ୍କୁ ଘୋଷାରି ଘୋଷାରି ଆଣି ଦାଣ୍ଡରେ ବାନ୍ଧି ଦବତ, ନଅଙ୍କନା ବସିପଡ଼ିବେ । ଗୁରି ଗୁରିଟା ଗାଈର କ୍ଷୀର ଶୁଖିଗଲା, ଶୁଖିଗଲା ସେ ଗଲା, ଆଉ ଦିନେ କି ଦିନେ ଉଧେଇଲା ନାହିଁ । ଧାନଗଛ ସବୁ ହଳଦିଆ ହୋଇଗଲା, ବୋଇତାଳୁ ଗଛରେ ବୋଇତାଳୁ ସବୁ ବରକୋଳି ସାଇଜ୍ ପହଞ୍ଚିଦା ମାତ୍ରକେ ବଢ଼ିବାକୁ ଭୁଲିଗଲେ । ଗୋଟାଏ ପୁଅକୁ ଝାଡ଼ା ରୋଗ ଧଇଲା, ଆଉ ଗୋଟାକର ପେଟ ବଢ଼ିଗଲା, ଆଉ ଗୋଟେ ଝିଅ ସକାଳୁ ସଞ୍ଜ ଯାଏ ଖାଲି ପୃଥିବୀଯାକ ଖାଇବ ଖାଇବ ହେଲା, ଝିଅ ନେକ୍ଲେଶିଟାର ବାହାଘର ଯୋଉଠି ଠିକ୍ ହେଲା, ସେଠି ଶେଷବେଳକୁ କ'ଣ ଗୋଟେ କାରଣରେ ଭାଙ୍ଗିଗଲା ।

ଦିନେ ଅଧେ କି ସପ୍ତାହେ ମାସେ ହୋଇଥିଲେ ହଡ଼ିଆ କଥାଟାକୁ ସହି ନେଇଥାନ୍ତା, ମଣିଷ ହୋଇ ଚିଜେ ଅଧେ ଭଲମନ୍ଦ କିଏ ବା ସହି ନପାରେ । ହେଲେ ଏଇମିତି ଚାଲିଲା ମାସ ମାସ, ବର୍ଷେ, ଦି' ବର୍ଷ । ଦିନେ ସକାଳୁ ଉଠି ହଡ଼ିଆ ମୁହଁ ଧୋଇବାକୁ ଯାଉଚି, ତା' ଗୋଡ଼ ଖସିଗଲା, ଫି'ଦିନ ଭଳିଆ ସେଦିନ ବି ରାତିରେ ପାଣି ଢାଳି ହାବଳୀ ଘର ବାରଣ୍ଡା ଖସଡ଼ା କରି ଦେଇଥିଲା । ହଡ଼ିଆ ଗୋଡ଼ ଖସିଗଲା, ସେ ପଡ଼ିଗଲା, ଅଣ୍ଟାରେ ଭଲକରି ଅଳ୍ପଥରେ ଚୋଟ ଲାଗିଲା । ବାପାଲୋ ମା'ଲୋ ରଡ଼ିକରୁଚି ସେ, ଧାଇଁପେଲା ପୁଅଟି ତାକୁ ଉଠଉ ଉଠଉ ତା'ରି ଉପରେ କିନା ପଡ଼ିଗଲା । ସବୁବେଳେ ଖାଇବ ଖାଇବ ହଉଥିବା ପୁଅଟି ସେତେ-

ବେଲକୁ ଗ୍ରେପେଇ ଘରେ ପଶି କୁଟା କାଲି ଭାତ ଗ୍ରାନ୍ତ୍ର ଗ୍ରାନ୍ତ୍ର ଗ୍ରେପେଇ ଘରେ, ନଆଁ ଲଗେଇ ଦେଲାଣି । ସ୍ଥିତି ଏହି ସମୟରେ ନଆଁ ଲାଗିନ ଖବ ଆଉ ଗରାଏ ପାଣି ଆଣି ଗଜ ଗଜ ଳନା ଦଣ୍ଡଆ ଉପରେ ଢାଳିଦେଲା । ଦଣ୍ଡଆ ଆଉ ଦହିପାରିଲା ନାହିଁ, ତା' ପାଟିରୁ ବାହାରି ପଡ଼ିଲା, 'ମୋତେ ହେଲେ ଯମ ନଅନ୍ତା, ଏଥରୁ ଉଦ୍ଧାର କରନ୍ତା ।' କହିଦେଲା ସିନା, କହିସାରି ମନଦୁଃଖ କଲା । ଦଣ୍ଡଆଟା ଧାର୍ମିକ ଲୋକ, ଧ'ଥର ମା' କାଳିଆଶୁଣୀ, ମା' କାଳିଆଣୁଣୀ ଜପିଲା । ସେଇଦୁ ଉଠି ଧନମାକର ଏ କାମ ସେ କାମରେ ବ୍ୟସ୍ତ ରହି ଏକଥା ଭୁଲିଗଲା ।

ଦେଧନ ସଞ୍ଜକୁ ପୋଖରୀପାଣି ଧାଶ ଦଣ୍ଡଆ ଫେରୁଛି, ବରଗଛ ମୂଳରେ, ଯୋଉଠି ମଲାହାଣ୍ଡି ପଡ଼େ, ସେଇ ପାଖରେ କଏ କହିଲା, 'ଦଣ୍ଡଆ, ଏଇ ଦଣ୍ଡଆ !' କଣ୍ଠସ୍ୱରଟା ଦଫା ଶୁଭୁ ନ ଥିଲା, ଦତେ ଯେମିତ କଏ ଦାନ୍ତ କାମୁଡ଼ି ଫିସ୍ ଫିସ୍କର କହୁଚ ।

'ନାଇଁ ମ, ମୋତେ କଏ ଡାକବ, ମୋ ବେଲ ଖରାପ ପଡ଼ିଚ, ସେଥିପାଇଁ ମୋ ମୁଣ୍ଡ ବ ଖରାପ ହେଲାଣି', ଦଣ୍ଡଆ ନଜେ ନଜେ କହିଲା ଓ ତରତର ହେଇ ଗୁଲିଗଲା ।

'ହଇଓ ଏମିତ ଧପାଳିଚ କାହିଁକି ?' ପୁଣିଥରେ ସେଇ ସ୍ୱର କହିଲା, 'ମୋତେ ଖୋଜୁଥିଲ ପରା ? ମୁଁ ଆସିଚ ।'

'ତୋତେ କେତେଥର କହିଲିଣି, ଏଇ ବାଟେ ସନ୍ଧ୍ୟାରେ ଆସିବୁନରେ ମୂର୍ଖ ଦଣ୍ଡଆ' । ଦଣ୍ଡଆ ଭାବିଲା, 'ଏବେ ଶଳା ମର, ହନ୍ତୁ ହନ୍ତୁ ପଛକୁ ଆଉ ଅନାନ, ଗୁଲ, ଜଲଦ ଗୁଲ' ଓ ଧ'ଗୁଣ ବେଗରେ ଗୁଲୁଗୁଲୁ ତା' କଗ୍ଛଟା ବାଡ଼ରେ କ କଣ୍ଟାରେ ଲାଗିଗଲା । ପଛକୁ ନ ଅନେଇ ହାତ ବଢ଼େଇ କଗ୍ଛଟି ମୁକୁଳେଇଲା-ବେଳେ ତା' ହାତ ଗୋଟେ ଶିଙ୍ଗରେ ବାଜିଲା, ଦଣ୍ଡୀବାନ ଟଣ ଅଣ ପଛକୁ ଅନେଇଲା, ମଇଁଷିଟିଏ, ମଇଁଷି ଉପରେ କାଳିଆ ଲୋକଟିଏ, ଲୋକଟି କୁମ୍ଭୀର ପଣ ଦାନ୍ତ ଦେଖେଇ ହସିଲା । 'କ'ଣ ଦଣ୍ଡଆ ପଳଉଚ ?' ଲୋକଟି କହିଲା, 'ମୋତେ ପରା ଦକାଳୁ ଡାକିଥିଲ ?'

ଦଣ୍ଡଆ ସିନା ଧାର୍ମିକ ଲୋକ, ସେ କନ୍ତୁ ଆଗରୁ କୋର୍ଟ କଚେରୀ ଦେଖିଚ । କହିଲା, 'ମୁଁ ଡାକିଥିଲି ? ଡାକିଥିଲି ବୋଲି ଏମିତ କହିଦେଲେ ହେଇଗଲା ? ସାକ୍ଷୀ ପ୍ରମାଣ ଦବ ? ହୁଁଃ, ମୁଁ କୁଆଡ଼େ ଡାକିଥିଲି' ମୁହଁରେ ମିଛ ସାହସ ଫୁଟେଇ ଆଗକୁ ଗୁଲିଲା ।

ମାଲିମକଦ୍ଦମା କଥା ପଡ଼ିଲେ, ଯୋଉ ବାହାର ଲୋକ ହେଲେ ବ, ଆମ ଗାଁରେପଟଣା ଅଧେ ହାମୁଡ଼େଇ ପଡ଼ିବ । ସେଇ ଲୋକଟି ଥମଥମେଇ ଗଲା ।

କହିଲା, ଏଠି ସାକ୍ଷୀ ପ୍ରମାଣ କଥା ତ ପଡ଼ୁନି, ତମ ଭଲପାଇଁ ମୁଁ ଆସିଥିଲି, ତମେ ସନ୍ଧି ନାହିଁ କରିବ, ତା'ହେଲେ ମୁଁ ଚାଲିଯିବି, ଏଥିରେ ସାକ୍ଷୀ ପ୍ରମାଣ ମାଲିମକଦ୍ଦମା କଥା କାହିଁକି ପଡ଼ୁଚି ?' ଓ ସତେକି ବୁଲିପଡ଼ି ଫେରିଯିବ ସେମିତି ହେଲା ।

ସତିଅର ମନ ଦୋଦୋପାଞ୍ଚ ହେଲା । 'ରୁହ, ରୁହ ଭାଇନା' ସତିଆ କହିଲା, 'କଥାଟା ଅଗ ପଛ, ତମ ମନ ନ ମାନିଲେ ତମକୁ କିଏ ବାଧ୍ୟ କରୁଚି ନା । ମୋ ମନ ନ ମାନିଲେ ମୋତେ କିଏ ବାଧ୍ୟ କରୁଚି ?'

ସେମାନେ ସେଇଠି ବସିପଡ଼ିଲେ ଓ ମଇଁଷିଟି ବସି ପାକୁଳି କଲା । 'ଏଇ ଆଲୁଅ ଟିକେ ଅଣିଲୁ' ଲୋକଟି ଅନ୍ଧାରକୁ ଅନେଇ କାହାକୁ କହିଲା । ସାଙ୍ଗେ ସାଙ୍ଗେ ଶିଆଳଟିଏ କୋଉଠି ଥିଲା, ଦୌଡ଼ି ଅସିଲା ଓ ପାଟି ଖୋଲି ଛିଡ଼ାହେଇ ରହିଲା । ତା' ପାଟିରୁ ମିଞ୍ଜି ମିଞ୍ଜି ଆଲୁଅ ବାହାରୁଥାଏ । ଲୋକଟି ପଇସିକିଆ କାଗଜ, ଷ୍ଟାମ୍ପ, ନଥିପତ୍ର ଓ ଫର୍ଣ୍ଣେ ଦୁ'ଖଣ୍ଡ ଅଇନ୍ ବହି ବାହାର କଲା ।

ଢେର୍ ଆଲୋଚନା ପରେ ଦରଦାମ୍ ଛିଣ୍ଡିଲା, ଦଲିଲ୍ ଲେଖାଗଲା । ସତିଆର ଅୟୁଷର ସାତ ବର୍ଷ କାଟି ବାକିତକ ସେ ଲୋକଟି ( ସେ ପ୍ରକୃତରେ ଯମ ଥିଲା ) ନେଇଗଲା ଓ ପ୍ରତିବଦଳରେ ସତିଆର ସବୁ ଅଭାବ ଅସୁବିଧା ସେ ନେଇଯିବ ବୋଲି କଥା ଛିଣ୍ଡିଲା । 'ସାତବର୍ଷ ! ହେ, ସାତବର୍ଷ କାହିଁରେ କ'ଣ । ଧର, ମୁଁ କାଲି ମରିଯାଇଥାନ୍ତି, ପୋକଯୋକ, କୁଷ୍ଠରୋଗୀ, ରାଣ୍ଡୀ ଟଣ୍ଡି କ'ଣ ମରୁନାହାନ୍ତି,' ସତିଆ ଭାବିଲା, 'ସାତବର୍ଷ ତ ଅଗ ସୁଖରେ ବଞ୍ଚିବି, ତା'ଛଡ଼ା ଚଳେ ଗଲେ ବାର ହାତ, ଦେଖାଯାଉ ।' ଦଲିଲ ଟିକିନଖି ପଢ଼ାହେଲା ଓ ସୁସ୍ଥ ମନ, ସ୍ଥିର ମସ୍ତିଷ୍କରେ ସବୁ କଥା ବିଚାର କରି ସେମାନେ ଦଲିଲ୍‌ରେ ଦସ୍ତଖତ୍ କଲେ ବୋଲି ଲେଖିଲେ ଓ ଦସ୍ତଖତ୍ କଲେ । ଦଲିଲ୍ ପତ୍ର ଧରି ଯମ ସେଠୁ ଚାଲିଗଲା ।

ଦେଖୁ ଦେଖୁ ଦିନ ଚାରିଟାରେ ସତିଆର ସବୁ ଦୁଃଖ ଦୂର ହେଇଗଲା । ତା' ଅଣ୍ଟା ଭଲ ହେଇଗଲା, ତା' ସ୍ତ୍ରୀ ଛୁଆପିଲା, ଗାଈ ବଳଦ, ବିଲେଇ ଛୁଆ ଓ ଏପରିକି ତା' ଘରର ଝିଟିପିଟି ମଧ୍ୟ ଖାଇପିଇ ବେଶ୍ ଥାକୁଲୁ ଥାକୁଲୁ ଦିଶିଲେ । ତା' ଜମିରେ ଧାନ ଫଳିଲା, ଯାହାକୁ ଦେଖିଥିଲେ, ଯେ କୌଣସି କବି ସୁନା ଫଳୁଚି ବୋଲି କହିଥାନ୍ତା ଓ କବି ମଧ୍ୟ କହିଛନ୍ତି ସୁଖର ସମୟ ଚାଲିଗଲା ବେଳେ ଜଣାପଡ଼େ ନାହିଁ । ଦେଖୁ ଦେଖୁ ଛଅ ବର୍ଷ ପୂରି ସାତ ବର୍ଷ ପୂରିବାକୁ ଅଳପ କିଛି ଦିନ ଅଛି, ସତିଆ ହାଟରୁ ଫେରୁଚି, କିଏ ଜଣେ କହିଲା, 'ସତିଆ ସତିଆ, ଏ ସତିଆ !'

'ମୋ ମୁଣ୍ଡ ଫେର୍ ଖରାପ ହେଲାଣି,' ସତିଆ ଭାବିଲା ଓ ଲମ୍ବା ଲମ୍ବା ପାହୁଣ୍ଡ ପକେଇ ଆଗେଇ ଚାଲିଲା ।

'ଏଁ...ହେଃ ହେ', ଲୋକଟି ପଛରୁ ସଢଆ ପାଖକୁ ଲାଗିଆସି କହିଲା, 'କିଛି ନାହିଁ ଯେ, ଏଇମିତି ଟିକେ ଖବର ବୁଝିବାକୁ ଆସିଥିଲି । ସବୁ ଭଲ ଅଛି ତ?'

ସଢଆ ଅନେଇଲା, କାବୁଲିଓ୍ୱାଲା ପରି ଦିଶୁଥିବା ଲୋକଟି ପ୍ରକୃତରେ ଯମ ଥିଲା । ତା' ତଣ୍ଟି ଶୁଖି ଶୁଖି ଗଲା, ଦେହରୁ ଝାଳ ବାହାରିଲା, ତା' ପାକସ୍ଥଳୀରେ ପ୍ରଜାପତି ଓ ହୃତ୍ପିଣ୍ଡରେ କମାରଶାଳ ।

'କ'ଣ, କ'ଣ ହେଲା କି ?' ଖନେଇ ଖନେଇ ସଢଆ କହିଲା ।

'ନାହିଁ ଏଇ ହିସାଠୀ ଘର ବୁଢ଼ା ପାଖକୁ ଆସିଥିଲି—ଆଉ କିଛି ଅସୁବିଧା ନାହିଁ ତ ?'

'ସୁବିଧା ଆଉ କ'ଣ ? ପୁଅଟା ମେଟ୍ରିକ୍ ପାସ୍ କରି ବୁଲୁଚି, ଗୃହକର ଝଣ୍ଟେ ନାହିଁ, ଜନଆଁ ପାଢଟିଏ ବି ମିଳୁନି, ତା' ନାଁରେ ସ୍ୱାଡ଼୍ ସ୍ୟାଡ଼୍ କଥା ଶୁଣା ହେଲାଣି ଯେ, ମତେ ଆଉ ଭଲ ଲାଗୁନି । ପାପଡ଼ାପାଳରେ ଜମି ଖଣ୍ଡେ ଠିକ୍ କରିଥିଲି ଯେ, ସେ ଲୋକଟା ରାଜି ହଉନି । ନାତିଟାର ଦେହ ଭଲ ରହୁନି । ଏଇମିତି ସବୁ ଅସୁବିଧା ।'

'ଠିକ୍ ଅଛି, ସବୁ ସୁବିଧା କରିଦବା ।' ଯମ କହିଲା ଓ ଯାଉଯାଉ ବୁଲିପଡ଼ି ପଛକୁ ଅନେଇ କହିଲା, 'ହଁ ଅଇମା ଭିତରେ ମୁଁ ଆସିବି ଯେ, ଅଳ୍ପ ଦିନ ତ ରହିଲା ।'

ଯମ ଏମିତି ଭାବରେ କହିଲା, ଯେତେ ଯେମିତି ସେ ଖବରକାଗଜବାଲା ଓ ସାଧାରଣ କଥାଟିଏ କହିଲା । ସଢଆର ହୃତ୍ପିଣ୍ଡ ଦୁଇ ଚୃଶ ଥର କାମୁ ଧକଧକ କରିବାକୁ ଭୁଲିଗଲା । ତା' ପାକସ୍ଥଳୀର ପ୍ରଜାପତିମାନେ ଅଣ୍ଡା-ସଁବାଳୁଅ-ପ୍ୟୁପା-ପ୍ରଜାପତି କ୍ରମରେ ବଂଶ ବୃଦ୍ଧିକରି ପାକସ୍ଥଳୀରୁ ବାହାରି ଆସି ଆଖି ଆଗରେ ଘୁରିଲେ, ତା' ପାଟିରୁ କଥା ବାହାରିଲା ନାହିଁ କି ପାଦ ଆଗକୁ ଚାଲିଲା ନାହିଁ । 'କିରେ ? କ'ଣ ମୁଣ୍ଡ ବୁଲେଇଲା କି ?' କିଏ ଜଣେ ପଚାରିଲା ।

ସଢଆ ଚମକି ପଡ଼ିଲା, 'ଓ-ହୋ-ହଗୁରାଇ—ଓ ହୋ;—ଓଃ ହୋଃ !'

'ଆ, ତୁ କ'ଣ ଯମକୁ ଦେଖିଲୁ ଭଳିଆ ଚମକୁଚୁ କିରେ', ହଗୁରାଇ କହିଲା ।

'ଏଁ, ଯମ । ହେଃ ହେଃ, ଯମ କ'ଣ ? ଯମ କାହିଁ ? ହେଃ ହେଃ, ହଗୁରାଇ ତୋର ଏଇ ବଗୁଲିଆମି ଗଲାନି, ଚାଲ ଚାଲ' ସଢଆ କହିଲା ।

ଗାଁ ଭିତରକୁ ଫଣ୍ଟୁ ଫଣ୍ଟୁ କାନ୍ଦଣା ଶୁଭିଲା । କିଏ ଜଣେ କହିଲା ତ୍ରିପାଠୀଘର ବୁଢ଼ା ଚାଲିଗଲା ।

'ଅହା, ଆହା' ହଗୁରୁଆ କହିଲା ।

ହଡିଆ ଭେଁ ଭେଁ ରଡ଼ିକଲା ।

## ॥ ଦୁଇ ॥

ସ୍ତ୍ରୀ'ପରେ ହଡିଆକୁ ଆଉ ଜମାରୁ ନିଦ ହେଲାନି । ପ୍ରତିଦିନ ଖଟରେ ଶୋଇବାକୁ ଗଲାବେଳେ ସେ ହିସାବ କଲା, ଆହା ଦିନଟିଏ ଚାଲିଗଲା । ଅବଶ୍ୟ ହଡିଆର କୌଣସି ଅସୁବିଧା ସେମିତି ନଥିଲା । ସେ ବର୍ଷ ଧାନରେ ସମସ୍ତଙ୍କର କେଣ୍ଡା ପୋକ ଲାଗିଲେ, ହଡିଆର ଜନ୍ତୁ ଲାଗିଲା ନାହିଁ; କିନ୍ତୁ ସେ ମରିବାକୁ ଚାହୁଁ ନଥିଲା ଅର୍ଥାତ୍ ବିନା ଯୁଦ୍ଧରେ ହାରିଯିବାକୁ ପ୍ରସ୍ତୁତ ନ ଥିଲା । ପାପଡ଼ାପାଲି କି ମକୁନ୍ଦପୁର ଲୋକ ହୋଇଥିଲେ କଥା ଅଲଗା ଥିଲା, କିନ୍ତୁ ହଡିଆ ଆମ ଗାଁ ଲୋକ । ଏଇମିତି ଦେଖୁ ଦେଖୁ ଆଖି ଆଗରେ ଘଟଣାଟା ଘଟିଯିବ ଅଥଚ ସେ ପାଞ୍ଚ ପଞ୍ଚଙ୍କୁ ପଚାରିବନି ? ଅବଶ୍ୟ କଥାଟା ବାଗେଇ କରି ପଚାରିବା ଦରକାର । ଜଣା ପଡ଼ିଗଲେ ବଦନାମି ହେବ । ମୋଟ ଉପରେ ଏପରି ଏକ ଅବସ୍ଥା ଯାହାକୁ ଦେଖି ଫକୀରମୋହନ କହିଥାନ୍ତେ, ଅଜାଗା ଘା' ଦେଖି ହୁଏନି କି ଦେଖେଇ ହୁଏନି । ଜଣେ ଦି'ଜଣ ମାମଲତ୍‌କାର୍‌ଙ୍କୁ ବୁଝେଇ ବାଝେଇ ଦଲିଲ୍ ଇତ୍ୟାଦି ବିଷୟରେ କେତେ କ'ଣ ଆଇନ୍ ପଏଣ୍ଟ୍ ଅଛି ତାକୁ ମୋଟାମୋଟି ବୁଝିବାକୁ ଚେଷ୍ଟା କଲା । ଶେଷରେ ତା'ର ଧାରଣା ହେଲା ଯେ (ଏକ) ସଂସାରରେ ଏମିତି ଦଲିଲ୍‌ଟିଏ ନାହିଁ ଯୋଉଥିରେ ପାଞ୍ଚ ଦଶ ଭୁଲ୍ ନଥିବ । (ଦୁଇ) ସଂସାରରେ ଏମିତି ଦଲିଲ୍ ନାହିଁ ଯୋଉଟା ତରଣୀସେନ୍ ଦାସ୍ ହାତରେ ପଡ଼ିଗଲେ ସେ ପଚିଶ କି ତିରିଶ ଭୁଲ୍ କାଢ଼ି କଚେରିରେ ବେଆଇନ୍ ସାବ୍ୟସ୍ତ କରିଦେଇ ନ ପାରିବ ।

ପରଦିନ ସକାଳୁ ସକାଳୁ ବସ୍ ଧରି ହଡିଆ ଭଦ୍ରକରେ ପହଞ୍ଚିଗଲା ଓ ଆମୂଳଚୂଳ ସବୁକଥା ତରଣୀସେନ୍‌କୁ ଶୁଣେଇଲା । ତରଣୀସେନ୍ ଦାସ୍ ଚୁରୁଟ୍ ଟାଣି ଟାଣି ସବୁକଥା ଶୁଣିଲା ଓ ଖାଲି ମୁଣ୍ଡ ଟୁଙ୍ଗାଇଲା । ଜୀବନରେ ସେ ଢେର୍ ଢେର୍ ମକଦ୍ଦମା ଲଢ଼ିଛି; ନିଶ୍ଚିତ ଫାଶୀ ମୁହଁରୁ ଦୋଷୀକୁ ମୁକୁଳେଇ ଆଣିଲାବେଳେ, ଲୋକେ କହନ୍ତି ସେ ଯମ ସାଙ୍ଗେ ଲଢ଼ିଲେ ବି ଜିତିଯିବ, କିନ୍ତୁ ଶେଷରେ

ତାକୁ ଯେ ଦିନେ ସତକୁ ସତ ଯମ ସାଙ୍ଗେ ମକଦ୍ଦମା ଲଢ଼ିବାକୁ ପଡ଼ିବ, ସେକଥା ସେ କେବେ ଭାବି ନଥିଲା, ତଥାପି ସେ ଜୋର୍‌ରେ ଭୂଇଁରେ ଜୋତାର ହିଲ୍ କଚାଡ଼ିଲା ଓ କହିଲା, 'ବାସ୍ ? ଏତିକି ? ଠିକ୍ ଅଛି, ବ୍ୟସ୍ତ ହୁଅନି । ଏଇ ମକଦ୍ଦମାରେ ଯମଠୁ ତମକୁ ଜିତେଇ ନ ପାରିଲେ ମୁଁ ଓକିଲାତି ଛାଡ଼ିଦେବି । ବ୍ୟସ୍ତ ହୁଅନି, ମୁଁ ଯାଉଛି ଦେଖିବି ।' ସତିଆ ଶହେ ଟଙ୍କା ଫିସ୍ ଦେଇ ବାହାରକୁ ବାହାରି ଆସିଲା ।

ତା'ପରଦିନ ତରଣୀସେନ୍ ଦାସ୍ ସକାଳୁ ସତିଆ ଘରେ ପହଞ୍ଚିଗଲା । ଛୁଆପିଲାଙ୍କ ସଙ୍ଗରେ ମଜଲ ମହଲ ଖେଳି ଶୁଏଇ ଦବାକୁ ସାବିତ୍ରୀକୁ ତାଗିଦ କରିଦବାରୁ ପିଲାଏ ଜମାରୁ ଶୋଇଲେନି । ରାତି ଏଗାରଟା ବାଜିଲା ପରେ ଚୁପ୍‌ଚାପ୍ ହେଇଗଲାବେଳକୁ କବାଟ ଠେଲି ଯମ ଭିତରକୁ ଚାଲିଆସିଲା । ତାକୁ ଦେଖି ସତିଆ ସାଙ୍ଗେ ସାଙ୍ଗେ ମୂର୍ଚ୍ଛା ଗଲା ।

'ମୁଁ ଆପଣଙ୍କ ଦୃଷ୍ଟି ଆକର୍ଷଣ କରିପାରେ କି', ତରଣୀସେନ୍ ଦାସ୍ କହିଲା, 'ମୁଁ ଶ୍ରୀ ସତ୍ୟବାନଙ୍କ ପକ୍ଷରୁ ନିଯୁକ୍ତ ଓକିଲ, କେତେଟା ଆଇନଗତ ପଏଣ୍ଟ୍ ବିଷୟରେ ମୋର ଆପଣଙ୍କ ସାଙ୍ଗେ କଥାବାର୍ତ୍ତା ଅଛି ।'

ଏହା ଶୁଣି ଯମ ଆଦୌ ଖୁସି ହେଲାନାହିଁ ଓ ଏମିତି ରାଗିକି ଅନେଇଲା ସତେ ଯେମିତି ତା'ର ଇଚ୍ଛା ସତିଆକୁ ଛାଡ଼ି ତରଣୀସେନ୍ ଦାସ୍‌କୁ ତା' ବଦଳରେ ପାଇଲେ ସେ ବେଶ୍ ଖୁସି ହୁଅନ୍ତା; କିନ୍ତୁ ତା'ର କିଛି କହିବାର ନଥିଲା, କାରଣ ଏତେବେଳକୁ ତରଣୀସେନ୍ ଦାସ୍ ଟଙ୍କେ ଦାମର ପଇସିଆ କୋର୍ଟ ଫି ମରା ୱକାଲତନାମା କାଢ଼ି ଯମର ତଗା ତଗା ଆଖି ଆଗରେ ଦି'ଥର ଭଦେଇ ଆଣି ସାରିଥିଲା ।

ଏହା ପରେ ଓକିଲ ଓ ଯମ ଭିତରେ ପ୍ରାରମ୍ଭିକ ଯୁକ୍ତିତର୍କ ଆରମ୍ଭ ହେଲା । ତରଣୀସେନ୍ ଦଲିଲ୍‌ଟିକୁ ଟିକିନିଖି ଦେଖିଲା ଓ ସେଥିରେ ସାକ୍ଷୀ ନାହିଁ ବୋଲି ପ୍ରଥମେ ଦେଖେଇ ଦେଲା । ସତିଆକୁ ନିଦରୁ ଉଠାଗଲା ଓ ସେ ନିଜ ଦସ୍ତଖତ ମାନି କଲା । 'ସେ ପରା ମାନିସାରିଲାଣି, ଏହା ତା ନିଜ ଦସ୍ତଖତ ବୋଲି, ଆଉ ଫେର୍ ସାକ୍ଷୀ କ'ଣ ଦରକାର ?' ଯମ କହିଲା ।

'ଯେଉଁ ଦେଶରେ ଏପରିକି ହନୁ ମାଙ୍କଡ଼ ପରି ମିଛୁଆଟିଏ ମଧ୍ୟ ଯମର ସାମ୍ନାହେବା ବେଳକୁ ସତକଥା ଗଳ ଗଳ କରି କହି ପକାଏ, ସେଠି ସତ୍ୟବାନ ଅବା କାଫର ମିଛ କହିଥାନ୍ତା ।'

ତରଣୀସେନ୍ କହିଲା, 'ବର୍ତ୍ତମାନ ପ୍ରଥମ କଥା ମୋର ଜଣେ ମାଜିଷ୍ଟ୍ରେଟ୍ ଦରକାର ।'

'ମାଜିଷ୍ଟ୍ରେଟ୍ !' ଯମ ତା'ର ସାଁବାଳୁଆ ଲୋମ ପରି ଲୋମ ଥିବା ହାତ ମୁଣ୍ଡରେ ବାଡ଼େଇ କହିଲା, 'କହୋ, ମୁଁ ଏଇନେ ମାଜିଷ୍ଟ୍ରେଟ୍‌ଟେ କୋଉଠୁ ଆଣିବି ?'

ତରଣୀସେନ୍ ଚଉକିରେ ହାତଦେଇ କିଛି ସମୟ ଭାବିଲା । ହଠାତ୍ କୌଣସି ହୋଟେଲ ଭିତରକୁ ପର୍ଦ୍ଦା ଠେଲି ପଶିଆସି ସବୁ ଚେୟାର ଟେବୁଲ ଭର୍ତ୍ତି ଥିବାର ଦେଖି ଫେରିଯିବ କି ନାଁ ନିଶ୍ଚିତ ହୋଇନପାରି କାଉଣ୍ଟର ପାଖକୁ ଚାଲିଯିବ ଓ କାଉଣ୍ଟରରେ ରହିବ ହଉ ହଉ ଦୁ'ଘଣ୍ଟା କହୁଣିଭୁଷା ଖାଇ ଖାଇ ଫେରିଯାଉଥିବା ଖେଳାଳି ଲୋକ ପରି ମଇଁଷିଟିଏ ଦାଣ୍ଡରୁ ଫେରିଯାଉଥିଲା । ମଇଁଷିଟିକୁ କିଛି ସମୟ ଅନେଇ ତରଣୀସେନ୍ କହିଲା, 'ଠିକ୍ ଅଛି, ସେ ହେଲା ଆମ ମାଜିଷ୍ଟ୍ରେଟ୍, ରାଜି ତ ?'

ଯମ ମଇଁଷି ଆଡ଼କୁ ଅନେଇ ଅଭିମାନିଲା ଓ ସତଥା କହିଲା, 'ଏଟା କ'ଣ ଅଛି ? ସତେ ଯେମିତି ପୃଥିବୀର ସବୁଠୁ କାଳରୁ ବାରକ ଖୁରାରେ ସେଠି ଦୁ'ଟା ଗାର କାଟି ଦେଇ ଯୋଡ଼ାଏ ଅଲଗା ଅଲଗା ଆକାର ପ୍ରକାରର ରଡ଼ନାଆଁ ଥୋଇ ଦେଇଛି ।' ଯମ କହିଲା, 'ହଁ ରାଜି ।' ହୋଟେଲର ନଦୁଆ ଖେଳାଳି ଶୋଇବା ପୂର୍ବରୁ ବସ୍ତି ପରି ସତ୍ୟବାନ ଛାଡ଼ା ହେବାକୁ ମଧ୍ୟ ଅସମର୍ଥ ।

'ଏଥିରେ କୌଣସି ସନ୍ଦେହ ନାହିଁ ଯେ', ତରଣୀସେନ କହିଲା, 'ମୋ ସାକ୍ଷୀ ଗୋଟିଏ ସରଳ ନିରୀହ ଗାଉଁଲିଆ ଲୋକ । ତେଣୁ ମୋତେ ତାକୁ ଅପର ପକ୍ଷର ସାକ୍ଷୀ ହିସାବରେ ଜେରା କରିବାକୁ ଅନୁମତି ଦିଆଯାଉ ।'

ଯମ ଅଧୈର୍ଯ୍ୟ ହୋଇ କହିଲା, 'ହଁ ହଁ ଡାକ ଡାକ, ଅପର ପକ୍ଷ, କୃଷ୍ଣପକ୍ଷ ଶୁକ୍ଳପକ୍ଷ ସବୁ ପକ୍ଷର ସାକ୍ଷୀ ହିସାବରେ ଡାକ, ତାକୁ ଡାକ, ତା' ସ୍ତ୍ରୀ, ଛୁଆପିଲା, ବାପ ଅଜା ଚଉଦପୁରୁଷ ସମସ୍ତଙ୍କୁ ଡାକ, ହେଲେ ଜଲଦି କର ।'

ଏ ବସ୍ତିଖଣ୍ଡ ତମର ?' ତରଣୀସେନ ସତଥାକୁ ପଚାରିଲା ।

'ହଁ', ସତଥା କହିଲା ।

'ମୁଁ ଭାରି ଦୁଃଖରେ ଥିଲି । ମୋ ସ୍ତ୍ରୀର ପ୍ଳୀହା ହୋଇଥିଲା, ମୋର ମାଛିଆଖିଆ ହୋଇଥିଲା, ମୋ ପୁଅକୁ ବାଛିରି ଝାଡ଼ା ହଉଥିଲା, ମୋ ଝିଅକୁ ଡାଆଣୀ ଲାଗିଥିଲା । ମୋ ଧାନରେ ସିଂହା ପୋକ ଲାଗିଥିଲେ, ସବୁ ମକଦ୍ଦମାରେ ମୁଁ ହାରିଯାଉଥିଲି, ରାତିରେ ମୋ' ଘରେ ଟେଳା ପଡ଼ୁଥିଲା । ମୁଁ ଯେ ଖାଇପିଇ

ଚଳାବୁଲା କରି ପାରୁଥିଲା, ତାହାହିଁ ସବୁଠୁ ଆଶ୍ଚର୍ଯ୍ୟର ବିଷୟ ଥିଲା । ମୋର ମୁଣ୍ଡ କାମ କରୁନଥିଲା ।'

'ଏଇ ଲୋକଟିକୁ ଚିହ୍ନୁଚ ?'

ହଢିଆ ସେଇଆଡ଼କୁ ନ ଅନେଇ ମୁଣ୍ଡ ହୁଙ୍ଗାରିଲା ।

'ତା' ଆଡ଼କୁ ଅନେଇ କି କୁହ ।'

ଦେଖି ହୋ ଦେଖି, ହଢିଆ ଭେଁ ଭେଁ କରି ସାନ ପିଲାଙ୍କ ପରି ରଡ଼ି କରିବାକୁ ଆରମ୍ଭ କଲା । 'କ'ଣ ହେଲା, କାହିଁକି କାନ୍ଦୁଚ ?' ରାଗିଯାଇ ତରଣୀସେନ୍ କହିଲା ।

'ମୋତେ ଡର ମାଡୁଚି ।' ହଢିଆ କାନ୍ଦି କାନ୍ଦି କହିଲା ।

'ଦଲିଲ ଦସ୍ତଖତ୍ କଲାବେଳେ ବି ଡର ମାଡୁଥିଲା ?'

'ହଁ ।' ହଢିଆ କହିଲା । ତାକୁ ଏବେ ଆଉ କିଛି ପଚାରିବା ବେକାର, କାରଣ ସେ ଏଥର ନିୟମିତ ଓ ଅନବରତ ଭାବେ କାନ୍ଦିଲା । ଦ୍ୱିତୀୟ ସାକ୍ଷୀ ହିସାବରେ ସାବିତ୍ରୀକୁ ଡକାଗଲା । ସେ ଏସବୁ କାଣ୍ଡ କାରଖାନା ବିଷୟରେ କିଛି ଜାଣେନାହିଁ, ତା' ସ୍ୱାମୀ ଭଲ ନିରୀହ ଲୋକ, ତାଙ୍କର ସମ୍ପତ୍ତିବାଡ଼ିରେ କେବେହେଁ ଲାଳସା ନଥାଏ ଇତ୍ୟାଦି ସାବିତ୍ରୀର ସାକ୍ଷ୍ୟର ସାରାଂଶ ।

ଏଥର ହାତଝାଡ଼ି ତରଣୀସେନ୍ ଦାସ କହିଲା, 'ଏଇ ସାତଦିନ ଆଗରୁ ଯୋଉ ମେଙ୍କା ମଲିକ ମରିଗଲା, ତା' ପୁଅ ତାକୁ ବାଡ଼ଉଥିଲା, ତା' ବୋହୂ ତାକୁ ଖାଇବାକୁ ଦଉ ନଥିଲା, ତା' ଆଖିରୁ ସବୁବେଳେ ଲେଞ୍ଜରା ବୋହୁଥିଲା, ବାରଣ୍ଡାରେ ବସି ସକାଳୁ ସଞ୍ଜଯାଏ ଅଗଡ଼ ବଗଡ଼ ବକର ବକର ହେଉଥାଏ, ସେ କ'ଣ ପାଇଁ ମଲା ? ତା'ର କୋଉ ଇଚ୍ଛା ତମେ ପୂରଣ କରିଥିଲ ? କୋଉ ଦଲିଲ ବଳରେ ?

ସମ୍ମ ବିରକ୍ତ ହେଇ କିଛି ନବୁଝି ପାରିଲା ପରି ଅନ୍ୟମନସ୍କ ରହିବାକୁ ଛଳନା କରୁଥିଲା; ତରଣୀସେନ୍ ତା'ର ଖୁବ୍ ପାଖକୁ ଆସି ତା'କୁ ଚମକେଇ ଦେଲାପରିକା କରି କହିଲା, 'ହେ ମାଲିକେ, କହୁନ କାହିଁକି ? ମୋର ଏ ସୁଆଲ୍‌ର ଜବାବ୍ ଦିଅ !'

ମଇଁଷି ଶିଙ୍ଘ ହଲେଇ ସତେ ଯେମିତି କହିଲା, 'ହୁଁ ଦିଅ, ଉତ୍ତର ଦିଅ ।'

ଯମ କହିଲା, 'ତା'ର ସ୍ତ୍ରୀ' ସାଙ୍ଗେ କିଛି ସମ୍ପର୍କ ନାହିଁ ।' ମେଙ୍ଗା ମଲିକ ଏ କେସ୍‌ରେ ସାକ୍ଷୀ ଦେବାକୁ ଆସିବା ଦରକାର କି ନାହିଁ, ସେ ବିଷୟରେ ଗୋଟେ ବିଧିବଦ୍ଧ ଆଲୋଚନା ହେଲା । ପରିଶେଷରେ ମଫସ୍ସି ମାଜିଷ୍ଟ୍ରେଟ୍‌ଟି ମୁଣ୍ଡ ଟେକାଇଲା ଓ ମେଙ୍ଗା ମଲିକକୁ ତଲବ ହେଲା । ଚନ୍ଦ୍ରଗୁପ୍ତ, ଯେ ଏପର୍ଯ୍ୟନ୍ତ ଚୁପ୍‌ଚାପ୍ ବାହାରେ ଛିଡ଼ାହୋଇଥିଲା, ପାଟିକଲା, 'ମେଙ୍ଗା ମଲିକ ହାଜର ହୋ' ଓ ମେଙ୍ଗା ମଲିକ ଥୁରୁଥୁରୁ ହୋଇ ବାଡ଼ି ଧରି ପହଞ୍ଚିଲା ।

ତରଣୀସେନ୍ ମେଙ୍ଗା ମଲିକକୁ ପଚାରିଲା, 'ତମେ କ'ଣ ଯମ ସାଙ୍ଗେ ଦଲିଲ୍ କରିଥିଲ ?'

'ନାଁ ଦଲିଲ୍ କରି ନଥିଲି', ମେଙ୍ଗା ମଲିକ କହିଲା, କିନ୍ତୁ ଆଉ ଗୋଟେ କଥା ଅଛି । ଦିନେ ରାତିରେ ମୋ ପୁଅ ମୋତେ ବାଡ଼େଇଥିଲା ମୋ ବଦମାସ୍ ନାତି ମୋ ତକିଆ ପାଖରେ ମେଞ୍ଚାଏ ଗୁଡ଼ରଖି ଦେଇଥିଲା, ରାତିଯାକ ଘର ଭିତରେ ପିମ୍ପୁଡ଼ି । ମୋ ଉପରେ ବେଙ୍ଗ ମେଞ୍ଚାଏ ଛାଡ଼ିଦେଲା, ସେମାନେ ଟପ୍‌ଟାପ୍ ମୋ ଉପରେ ଡେଇଁଲେ । ଘର ଭିତରେ ସେ ଟର୍‌ର ଟର୍‌ର ମୂଢ ପକେଇଲା, ମୋତେ ଭାରି କଷ୍ଟ ହେଲା, ମୁଁ ଭାବିଲି ଏତେ କଷ୍ଟ ପାଉଛି, ଯମ କ'ଣ ମୋତେ ଭୁଲି ଗଲାଣି କି ? ଦେଖିରେ ଦେଖି, କେତେ ଶ୍ରେଷ୍ଠଲୋକ ସେ ଯମ, ମନକଷ୍ଟରେ କ'ଣ ଟିକେ କହିଦେଲି ଯେ, ଆସି ହାଜର ହୋଇଗଲା, ଏଟା କିନ୍ତୁ ଅନ୍ୟାୟ ହେଲା ।'

କେସ୍ ଆରମ୍ଭ ହେବା ପରଠାରୁ ତରଣୀସେନ୍ ଦାସ ପ୍ରଥମଥର ପାଇଁ ସ୍ମିତ ହସ ହସିଲା ଓ ମଫସ୍ସିଆଡ଼କୁ ଅନେଇ ଅଳ୍ପ ଆଖିଭଙ୍ଗି 'ଏହା ମଧ୍ୟ ନୋଟ୍ କରାଯାଉ' ବୋଲି କହିଲା ।

ଯେ କୌଣସି କଚେରି ମକଦ୍ଦମା ପରି ସେ ମକଦ୍ଦମା ଚାଲିଥିଲା । ଯେ କୌଣସି ମକଦ୍ଦମା ପରି ସେଠି ବି ଦି'ଜଣ ଲୋକ ପାଟିକଲେ, ରାଗିଲେ, ଟେବୁଲ ବାଡ଼େଇଲେ, ଝାଳନାଳ ହେଲେ, ବିଭିନ୍ନ ଆକ୍ଟିଂ କଲେ; ଜଣେ ଲୋକ ମଫସ୍ସି ପରି ବସି ବସି ଅନେଇଲା, ଅନେଇଲା, ଅନେଇଲା; ବାକି ସମସ୍ତେ ଗୁଣୁ ଗୁଣୁ ହେଲେ, ଢୋଳେଇଲେ, ବୋକାଙ୍କ ପରି ଚାହିଁଲେ, ହାଇ ମାରିଲେ, ଶୋଇଲେ, ପାନ ଚୋବେଇଲେ, ଛେପ ପକେଇଲେ ଓ ଜଣେ ଲୋକ ସଢ଼ଆ ବାହାରେ ଚୁପ୍‌ଚାପ୍ ଛିଡ଼ା ହୋଇ ହୋଇ ମରିବାକୁ ଯାଉଥିଲା ।

ତରଣୀସେନ୍ ଦାସ ଏହାପରେ ଗୋଟେ ଲମ୍ବା ବକ୍ତୃତା ଦେଲା, ତା'ର ସାରାଂଶ ଏମିତି : ପ୍ରଥମରେ ଦଲିଲ୍‌ରେ କେହି ସାକ୍ଷୀ ନାହାନ୍ତି । ଦ୍ୱିତୀୟରେ, ଏ ଦଲିଲ୍ ସବ୍‌ରେଜିଷ୍ଟ୍ରାର ଅଫିସ୍‌ରେ ରେଜିଷ୍ଟ୍ରି ହୋଇନି । ତୃତୀୟରେ, ଯମ ଜଣେ ଶକ୍ତିଶାଳୀ ଲୋକ ଓ ସଢ଼ଆ ଯମକୁ ସବୁବେଳେ ଡରୁଥିଲା, ଯମ ତେଣୁ

ଧମକେଇ ଧମକେଇ ଏ ଡଲାର୍ କରେଇ ନେଉଛି । ଚତୁର୍ଥରେ, ସମ୍ ଏଠି ସବୁକଥା ଖୋଲା ଖୋଲି କହୁନାହିଁ, ଅନେକ କଥା ଲୁଚେଇଛି । ପଞ୍ଚମରେ, ସେ ଭାରତର ନାଗରିକ ନୁହେଁ କାରଣ ଭୋଟର ଲିଷ୍ଟରେ ତା'ର ନାଁ ନାହିଁ । ଷଷ୍ଠରେ ହତ୍ୟାବାନ୍‌କୁ ସେ ଡଲାର୍‌ର କପିଟିଏ ଦେଇନାହିଁ, ତେଣୁ ଏଟା ଅନ୍ୟାୟ; ସେ ଓକିଲ ପରାମର୍ଶ ଇତ୍ୟାଦି କରିବାକୁ ସମୟ ପାଇନାହିଁ । ସପ୍ତମରେ···ଏହିପରି ତରଣୀସେନ୍ ଦାସର ଯୁକ୍ତି ଶୃଙ୍ଖଳା ଓ ସମ୍ ତା'ର ପ୍ରତ୍ୟୁତ୍ତର ଦେଲା, ସେସବୁ ଜନପଦ ଜଟିଳ ପର୍ଯ୍ୟାଲୋଚନା କରି ମୁଁ ଆପଣଙ୍କୁ ଆଉ ବୋର୍ କରିବାକୁ ଚାହୁଁନାହିଁ । ସେ ଏଇ ଅବସ୍ଥାକୁ ଆସିଲାବେଳକୁ କିନ୍ତୁ ଗୋଟିଏ କଥା ପରିଷ୍କାର ଜଣାପଡ଼ୁଥିଲା ଯେ, ଘଟଣା ଆଉ ସମର ଇକ୍ତିଆରରେ ନାହିଁ । ସମ୍ ଆଉ ଆଗପରି ଏତେ ଉତ୍ସାହରେ କଥା କହୁ ନଥିଲା ଓ ଏପରିକି ମଝିରେ ମଝିରେ ସତେକି— କାହା-ପାଇଁ-ଦୁଃଖ-ଅନୁଭବ—ମୁହଁରେ ଦୁଃଖ ସ୍ପଷ୍ଟ ଦିଶୁଥିଲା ।

ତରଣୀସେନ ଦାସ ଏଥର ସିଧା ଛୁଡ଼ା ହୋଇଗଲା । ଏକଦମ ସିଧା; ଓ ସେ ଏତେ ଡେଙ୍ଗା ଦିଶିଲା ଯେ, ସମ ଆଉ ତାକୁ ଅନେଇ ଏକାଥରକେ ମୁଣ୍ଡରୁ ଗୋଡ଼ଯାଏ ଦେଖିପାରିଲା ନାହିଁ, ଗୋଟେ ଦୂରବୀକ୍ଷଣ ଯନ୍ତ୍ର ବ୍ୟବହାରକରି ଓକିଲକୁ ଅନେଇଲା । ତରଣୀସେନ ଦାସ ପଚାରିଲା, 'ମଣିଷ ଜନ୍ମ ହେଲାବେଳେ ତା'ର ମରିବାର ଭାଗ୍ୟ—ସେ କେବେ, କେମିତ, କେଉଁଠି ମରିବ, ସେ କଥା ପୂର୍ବ ନିର୍ଦ୍ଧାରିତ କି ନାହିଁ ?'

'ସେହା ଏକ ଅଦ୍ଭୁତ କଥା', ସମ କହିଲା, 'ମୁଁ ଏଠି କହିପାରିବି ନାହିଁ । ଥରେ ଏକଥା ନଚିକେତା ବୋଲି ଗୋଟେ ଅର୍ବାଚୀନ ବାଳକକୁ କହିଥିଲି ଯେ, ସେ ବଦମାସ ତାକୁ କଠୋପନିଷଦ ବୋଲି ବହିଟିଏ କରି ଛପେଇ ପୃଥିବୀଯାକ ବାଣ୍ଟିଦେଲା । ସେଇଦିନଠୁ ଏକଥା ମୁଁ ଆଉ କାହାକୁ କହେ ନାହିଁ ।'

'ଯେତେବେଳେ ଜଣେ ଲୋକର ଜୀବନ ମରଣ କଥା ପଡ଼ିଚି, ସେତେବେଳେ ଆଉ ଏସବୁ ଚଳିବ ?' ତରଣୀସେନ ଦାସ ମଝିସି ମାଜିଷ୍ଟ୍ରେଟ୍ ଅଡ଼କୁ ଅନେଇ କହିଲା, 'ସାକ୍ଷୀକୁ ପ୍ରଶ୍ନର ଉତ୍ତର ଦେବାପାଇଁ ଆଦେଶ କରାଯାଉ ।'

ମଝିଷିଟି ସମ ଅଡ଼କୁ ଅନେଇ ଦ'ଥର ଶିଂଘ ଉପରକୁ ଝାଙ୍କିଦେଲା, ଅର୍ଥାତ୍ 'ଓକିଲ ଯାହା ପଚାରୁଛନ୍ତି ତା'ର ଉତ୍ତର ଦିଅ ।'

'ଠିକ୍ ଅଛୁ', ସମ ଶେଷକୁ କହିଲା, 'ସେକଥା କି ପୂର୍ବ ନିର୍ଦ୍ଧାରିତ ।' 'ତା' ହେଲେ ତୁମେ କେମିତ ଏଇ ପୂର୍ବ ନିର୍ଦ୍ଧାରିତ ବ୍ୟବସ୍ଥାଟିକୁ ବଦଳେଇ ଦେଇପାରିବ ? ଡଲାର୍‌ଦ୍ୱାରା ହଉ କି ଯୋଉଥିପାଇଁ ହଉ', ତରଣୀସେନ କଳ୍ପିତ ଟେବୁଲ ଉପରେ ହାତ ବାଡ଼େଇ କହିଲା ।

ଯମ କିନ୍ତୁ ଉତ୍ତର ଦେଇପାରିଲା ନାହିଁ । ଯମ କ'ଣ ଯମର ବାପା ବି ଯାଣି ନଥାନ୍ତା । ସେ କିନ୍ତୁ ଆଜେ ବାଜେ ଲୋକ ପାଇଁ ଲଢ଼ୁନଥିଲା; ଲଢ଼ୁଥିଲା ଖୋଦ୍ ତରଣୀସେନ ଦାସ ପାଇଁ ।

'ତା ମାନେ' ତରଣୀସେନ ଅନ୍ୟଥରେ କଳ୍ପିତ ଟେବୁଲ ଉପରେ ବିଧାମାରି କହିଲା, 'ହତ୍ୟାକାରୀଙ୍କୁ ନିର୍ଦ୍ଧାରିତ ସମୟ ପୂର୍ବରୁ ନେଇଯିବାର ତମର କୌଣସି ଅଧିକାର ନାହିଁ' ଓ ପୁଣିଥରେ ଟେବୁଲ ବାଡ଼େଇ କହିଲା, 'ନାହିଁ ନାହିଁ ନାହିଁ । ଗୋଟିଏ ନିର୍ଦ୍ଦୋଷ ସରଳ ଗ୍ରାମବାସୀକୁ ତମେ ଟେକେଇଦେଇ ତା'ର ବାଗିତକ ଅସ୍ପୃଷ୍ଟ ଏଇମିତି ନେଇ ଚାଲିଯିବ ବୋଲି ବସିଛ ? ଏହା ଅତ୍ୟନ୍ତ ଲଜ୍ଜାର କଥା ।'

ଯମ ଯେ ହାରିଯାଇଛି, ଏଥିରେ ସନ୍ଦେହ ନଥିଲା । ଗୋଟେ କୁମ୍ଭୀରର ସବୁ ଦାନ୍ତ ଝଡ଼ିଯିବାର ଓ ଗୋଟେ ହିଂସ୍ରଜନ୍ତୁର ସବୁ ଲୋମମୂଳରେ କଣ୍ଟା-ଫୁଟିଥିବାର କରୁଣ ଅଭିବ୍ୟକ୍ତି ଯମ ମୁହଁରେ ଥିଲା ।

ମର୍ତ୍ତିକିଟିଏ ବୃଦ୍ଧିମିଶ୍ରିତ ସମସ୍ତଙ୍କ ମୁହଁକୁ ଅନେଇଲା, ଗୋଟେ ଲମ୍ବା ଦୀର୍ଘଶ୍ୱାସ ଛାଡ଼ିଲା, ହମ୍ବାରଡ଼ିଟିଏ କଲା ଓ ମୁଣ୍ଡ ହଲେଇ ହଲେଇ ଅସ୍ତେ ଆସ୍ତେ ପଛେଇ ପଛେଇ କବାଟ ବାହାରକୁ ଚାଲିଗଲା । ତା' ପଛେ ପଛେ ଯମ, ଚିତ୍ରଗୁପ୍ତ ଓ ଅନ୍ୟାନ୍ୟ ସାକ୍ଷୀମାନେ । ଯାଉ ଯାଉ ଚିତ୍ରଗୁପ୍ତ ପଚାରିଲା, 'ସାର୍, କାଗଜପତ୍ର ସବୁ କଟାକଟି କରିବାକୁ ପଡ଼ିବ । ମୁଁ ତ ଖାତାରେ ହତ୍ୟାକାରୀ ନାଁ ଚଢ଼େଇ ଦେଇଥିଲି । ତା'ଛଡ଼ା ଟ୍ରୁ ଡାଇରୀରେ କ'ଣ ଲେଖାଯିବ ?'

'ଲେଖିବ ମକଦ୍ଦମା ଥିଲା ।' ଯମ ସଂକ୍ଷେପରେ କହିଲା ।

'ଯାହାହେଉ ସାର୍, ଏପରି ଆଗରୁ କେବେ ଘଟି ନଥିଲା । ମକଦ୍ଦମା ପାଇଁ ଆଗେ ମଣିଷ ସ୍ୱର୍ଗକୁ ଯାଉଥିଲା; କିନ୍ତୁ ସ୍ୱର୍ଗରୁ ମର୍ତ୍ତ୍ୟକୁ ମକଦ୍ଦମା ପାଇଁ ଆସିବା, ପୁଣି ହାରିଯିବା...ନାଃ, ଏପରି ଆଗରୁ କେବେ ଘଟି ନଥିଲା । କେବେ ନୁହଁ । ଚିତ୍ରଗୁପ୍ତ କହି କହି ବାହାରିଗଲା ।

ଅନେକ ସମୟ ପରେ ହତ୍ୟାକାରୀ ଓରଫ ସତିଆ ପ୍ରଥମଥର ପାଇଁ ନିଜ ଆସନରୁ ଉଠିଲା ଓ ତରଣୀସେନ ଦାସର ଗୋଡ଼ତଳେ ମୁଣ୍ଡିଆ ମାରିଲା 'ଯମ ସତରେ ମକଦ୍ଦମାରେ ହାରିଗଲା', ସତିଆ ବିଶ୍ୱାସ କରି ନପାରି ପଚାରିଲା ।

ତରଣୀସେନ୍ ହୋ ହୋ ହୋଇ ହସିଲା । 'ବୁଝିଲୁ ସତିଆ, ଆମେ ଦି'ଜଣ ଭଦ୍ରକିଆ ଯଦି ଗୋଟେ ବାହାର ଲୋକକୁ ମକଦ୍ଦମାରେ ହରେଇ ଦେଇ ନ ପାରିବା, ତା'ହେଲେ ବରଂ ଭଦ୍ରକରୁ କୋର୍ଟ କଚେରି ଉଠିଯିବା ଉଚିତ' ଓ ପୁଣିଥରେ ହୋ ହୋ ହୋଇ ହସିଲା ।

ସିନ୍ଦୁର ଫାଟି ଆସୁଥିଲା । ସାବନ୍ତୀ ଗୋଟେ ନର୍ଫାନ୍ତ ବୋଝା, ଘରଭିତରୁ କାନ୍ଦି କାନ୍ଦି ଦୌଡ଼ିଆସିଲା ଓ କହିଲା, 'ବୁଝିଲ, ବୁଝିଲ, ମୁଁ କାଲି ରାତିରେ ଗୋଟେ ଖରାପ ସ୍ୱପ୍ନ ଦେଖିଲି ।' ଓ ଭେ ଭେ ହୋଇ କାନ୍ଦିଲା । ତା' କଥା ଶୁଣି ତରଣୀସେନ୍ ଦାନ୍ତ ଅଧିର ଜୋର୍‌ରେ ହସିଲା ।

ଏବଂ ଆପଣ ଯଦି ମୋ କଥା ବିଶ୍ୱାସ କରୁନାହାନ୍ତି, ତା' ହେଲେ ମୁଁ ଏବେ ବି ଆପଣଙ୍କ ଆଗରେ ଦଶ ପନ୍ଦର ଲୋକ ଛିଡ଼ା କରେଇ ଦେବି, ଯେଉଁମାନେ ମୋ ସପକ୍ଷରେ ସାକ୍ଷୀ ଦେବେ । ତା'ଛଡ଼ା ଆପଣ ଯଦି ଟିଥିଅର ବଂଶଧରଙ୍କୁ ଏକଥା ପଚାରନ୍ତି, ତା'ହେଲେ ସେମାନେ ବଡ଼ ଜୋରରେ କଥାଟାକୁ ଅସ୍ୱୀକାର କରିବେ ଯେତେ ଯେମିତି ସେମାନେ ସବୁ କଥା ଦେଖିଛନ୍ତି । ଏହାଠାରୁ ଭଲ ପ୍ରମାଣ ଆଉ କ'ଣ ଦିଆଯାଇପାରେ ? କାରଣ ଟିଥିଆର ନାତି ଅନାତି ଆଉ କ'ଣ ଏକଥା ମାନନ୍ତେ ? ଏସବୁ ସତ୍ତ୍ୱେ ଆପଣ ଯଦି ମୋ କଥା ବିଶ୍ୱାସ ନକରନ୍ତି; ତା'ହେଲେ ମୁଁ ଆପଣଙ୍କ ନାଁରେ, ମୋତେ ମିଛୁଆ କହୁଚନ୍ତି ବୋଲି ଅଭିଯୋଗ କରି ମାନହାନି ମକଦ୍ଦମା କରିବି ଓ ମୁଁ କ'ଣ ଆମ ଗାଁର ଯେ କୌଣସି ମକଦ୍ଦମା କଲେ ଆପଣ ଯେ ହାରିଯିବେ ସେଥିରେ କ'ଣ ବା ସନ୍ଦେହ ? ଯଦି ବା ସନ୍ଦେହ କରନ୍ତି, ତା'ହେଲେ ମୁଁ ପୁନର୍ବାର ଦୁଇ ନମ୍ବର ମାନହାନି ମକଦ୍ଦମା କରିବି ।



# ମେରିଆ

ଯେତେଦୂର ମନେଅଛି କଥାଟି ପ୍ରଥମେ ମୁଁ ଶୁଣିଥିଲି ଶାନ୍ତନୁ ପାଖରୁ । ଅବଶ୍ୟ ତା' କଥାରୁ ବିଶେଷ କିଛି ବୁଝିହେଲା ନାହିଁ । କାରଣ କଥା ମଝିରେ ସେ କାହାକୁ ଗାଳିଦେଉଥିଲା ଓ ତା'ପରେ ଚୁପ୍ ହୋଇଯାଉଥିଲା । ସେ ମେରିଆ କଥାରୁ ହିଁ କଥା ଆରମ୍ଭ କରିଥିଲା । ସେ କହିଲା, ମେରିଆ ପର୍ବର ହତ ନାଁ କ'ଣ ଜାଣୁ? ମେରିଆ କ'ଣ, ମୋର ପ୍ରଥମେ ମନେନଥିଲା, କ୍ରମେ ଲର୍ଡ୍ ବେଣ୍ଟିଙ୍କ, ଠଗଦମନ ଓ ମେରିଆ କଥା କ୍ରମାନ୍ୱୟରେ ମନେପଡ଼ିଲା । ସେ କହିଲା, ମେରିଆର ନୂଆ ନାଁ ଟୋକୀମରା ପର୍ବ । ରେପ୍ ବି ଗୋଟେ ପ୍ରକାରର ମେରିଆ । ଏବେ ଅବଶ୍ୟ ହତ ମେରିଆରେ ଆଉ ଟୋକୀ ମରାଯାଉ ନାହିଁ, ଘୋଡ଼, ଛେଳି, କୁକୁଡ଼ା, ଅଣ୍ଡା କି ବୋଇତାଳୁ ବଳି ଦିଆଯାଉଛି । ହେଲେ ନାଁ ହେଉ ଟୋକୀମରା ପର୍ବ ଅଛି । ଧାମୀ ହୋଟେଲର ଏଇ ଏଅର୍ କଣ୍ଡିସନ୍ଡ୍ ରୁମ୍‌ରେ ଅନ୍ୟ ପଇସାରେ ଆରାମରେ ମଉଜ କରୁଥିବା ଜଣେ ଲୋକର ଏତେ କଥାରେ ମୁଣ୍ଡ ଘୂରାଇବା କ'ଣ ଦରକାର ବୋଲି ମୁଁ ପଚାରିଲି । ସେ କହିଲା, ସେ ଜାଣି ନାହିଁ, ଯାହା ଜାଣିଥିଲା କହିଲା; ଏହାଠାରୁ ଅଧିକ କହିପାରିବ ନାହିଁ ।

ଶାନ୍ତନୁ ଏକଥା ବି ଜାଣିନଥିଲା ଯେ ଝିଅଟି ପିଲାଦିନେ ନ୍ୟାସନାଲ ହାଇୱେରେ ଖାଲି ଦେହରେ ଚଡ଼ିଟିଏ ପିନ୍ଧି ଟ୍ରକ୍ ଡ୍ରାଇଭରଙ୍କୁ ଅଟକେଇ ତାଙ୍କୁ ଫୁଲହାର ବିକୁଥିଲା । ଫୁଲହାର ବିକିବାବେଳେ ବହୁତ ଟ୍ରକବାଲା ଅଟକୁ ନଥିଲେ, ତେଣୁ ଝିଅଟି ବହୁତ ସମୟରେ ରାସ୍ତାମଝିକୁ ଚାଲି ଆସୁଥିଲା । ଶାନ୍ତନୁ ଏ କଥା ବି ଜାଣି ନଥିଲା ଯେ ଝିଅଟିର ବଡ଼ ଭଉଣୀ, ତା'ଠୁ ବର୍ଷେ ବଡ଼, ସେ ଶାଢ଼ୀ ପିନ୍ଧି, ଦୁଇ ହାତରେ ଦୁଇଟା କୁକୁଡ଼ା; ଗୋଟେ ହାତରେ ଗଞ୍ଜା, ଆର ହାତରେ ମାଈ କୁକୁଡ଼ା ଧରି ଗାଡ଼ିମାନଙ୍କୁ ଅଟକଉଥିଲା ଓ ସେଥିପାଇଁ ରାସ୍ତାମଝିକୁ ଚାଲି ଆସୁଥିଲା ।

ଶାନ୍ତନୁ କହିଲା, "ଶଳା ଗୋଟେ ଟୋକୀକୁ କିଏ ନେଇଯାଉନ୍ତୁ ।"

ମୁଁ କହିଲି, "କଏ ? କୋଉଠି ?"

ଶାନ୍ତନୁ କହିଲା, "ଶଲା ସ୍କଚ୍ ଦେଲା ମେ ସୁରୁ ଆଡ଼ାଲ୍ଟରେଟେଡ୍ ।"

ମୁଁ ପୁଣି ପଚାରିଲି, "କଏ କାହାକୁ ଉଠେଇ ନେଲା କରେ ?"

ଶାନ୍ତନୁ ହାଇ ମାରିଲା ଓ କହିଲା, "ଯେତେବେଳେ ଆଉ କିଛୁ କାମ କରିବାକୁ ମୁଡ୍ ନଥାଏ, ସେତେବେଳେ ଖବରକାଗଜ ପଢ଼ିବାକୁ ମନ ହୁଏ ।" ତା'ପରେ ସେ ଖବରକାଗଜ ମଗେଇଲା. ବାର୍‌ରୁ ହ୍ୱିସ୍କି ମଗେଇଲା ଓ ବେୟରାକୁ କହିଲା, "ପାଣି ମିଶେଇକି ତ ଖୋଲି ଦେବ ।"

ଦୁଇ ପେଗ୍ ପରେ ସେ ମେଶିଆ କଥା ମଝିରେ କହିଲା, 'ଅରେ ସେ ଟୋକାକୁ ନେଇ କଲେ କ'ଣ ?' ମୁଁ କହିଲି, 'କେବେର କଥା କରେ ?' ସେ କହିଲା, 'କେତେର ସେବେର ନୁହେଁ ଏବେର । କୋଉ ଘଣ୍ଟାଏ ହବ ।'

ମୁଁ ରାଗିଯାଇ କହିଲି, 'ତୁ ମୋତେ ସେତେବେଳୁ କହୁନାହୁଁ ?' ସେ ଓଲଟି କହିଲା, 'କାହିଁକି କହିବ ? ମୁଁ କ'ଣ ତୋ ପାନ ଦୋକାନି ?'

ବାହାରକୁ ଆସି ( ଦୁଇ ପେଗ୍ ପରେ ଖରା ବେଶି ବାଧୁଥିଲା ) ଦେଖିଥିଲି ଯେ ସହରର ସମସ୍ତେ ଏ ଟୋକାଉଡ଼ା କଥା ଜାଣିଥିଲେ, ଏକା ମୋ ଛଡ଼ା । ତା'ପରେ ମୁଁ ଦୌଡ଼ିଥିଲି ଏଠୁ ସେଠି ହୋଇ, ଖବର ନେବାକୁ । ଆଶ୍ଚର୍ଯ୍ୟର କଥା, ଯଦିଓ ସମସ୍ତେ ଏକଥା ଜାଣିଥିଲେ ଓ ଉଚ୍ଚ ସ୍ୱରରେ ଏ ବିଷୟରେ ପାଟିତୁଣ୍ଡ କରୁଥିଲେ, କେହି ଦୌଡ଼ଯାଇ ନଥିଲେ ବା ନିଜ ସ୍ଥାନରୁ ଉଠୁ ନଥିଲେ । ଅପର ପକ୍ଷରେ ଅଧିକାଂଶ ସ୍ତ୍ରୀଲୋକ ଭୟଭୀତ ଥିଲେ ଓ ସାଧବପୋହୁ ପୋକ ପରି ହାତଗୋଡ଼ ଜାକି ବସିଥିଲେ, ଯେପରିକି କଏ ତାଙ୍କୁ ଉଠେଇନେବ ଓ ଉଠେଇନେଲାବେଳେ ହାତ କି ଗୋଡ଼ ଧରିନି ଟାଣିନେବ ।

ଗୋଟେ ଥାନାରେ ସୁବ୍ରତ ବାବୁଙ୍କ ଦେଖା ହୋଇଥିଲା । ମୁଁ ପଚାରିଥିଲି, "କରେ ମୁଁ ବୁଲିବୁଲି ଅସିଲିଣି, ତୁ ଯାଇନାହୁଁ ?" ସେ କହିଥିଲା, "ଯାଇକି ଲାଭ କ'ଣ ? ଥାନାରୁ ଯାହା ପାଇବି ତାକୁ ମାରିଦେବା ମୋର କାମ । ଏପଟ ସେପଟ ହେଲେ ପଛରେ ଗାଳି ହବ, ମନରୁ ବାହାରି ଲେଖିଚ ବୋଲି କଏ କହିଦେବ ।" ସେଇଠି ପ୍ରଭାତ ବି ଥିଲା । ସୁବ୍ରତର ସାନଭାଇ । ମୁଁ ଥଟ୍ଟା କରି ପ୍ରଭାତକୁ କହିଲି, "ତମ କାଗଜ ବି କଣା ହୋଇଗଲା ନା କ'ଣ ?"

ପ୍ରଭାତ କହିଲା, "ଭାଇ ଯାହା ଲେଖିବ, ମୁଁ ତା ଓଲଟା ଲେଖିବି । ସେଥିପାଇଁ ବସିଛୁ ।"

ସୁଖୀର କାଗଜରେ କଥାଟି ଆଉ ସେଦିନ ବାହାରିଲା ନାହିଁ । ଦୁଇଦିନ ପରେ ଝିଅଟି ଉଦ୍ଧାର ହୋଇସାରିବା ପରେ ସମ୍ବାଦଟି ବାହାରିଲା । ଝିଅଟି ସହରର କେନ୍ଦ୍ରରେ ସୁଖୀର କାଗଜର ଅଫିସ୍ ଓ ଦୁଖୀର କାଗଜର ଅଫିସ୍ ମଝିରେ ଅବସ୍ଥିତ ଏକ ସରକାରୀ କ୍ୱାର୍ଟର୍ସରୁ ଉଦ୍ଧୃତ ହୋଇଥିଲା ବୋଲି ଜଣାଗଲା । ଦୁଖୀର କାଗଜରେ କଥାଟି ଦୁଇଦିନଦିନ ଧରି ବାହାରିଲା, ସେ ଲେଖିଥିଲା, ଆପଣ ଭାବିବେ ଏ ରେପ୍ କୋଉ ଜଙ୍ଗଲରେ ହୋଇଥିବ, ଅବା କୋଉ ଦୂରଦୂରାନ୍ତ ଜାଗାରେ, ନିଛାଟିଆ ନଈପଠାରେ କି କୋଉ ଭଙ୍ଗା ଦୁର୍ଗରେ; କିନ୍ତୁ ଆପଣ କ'ଣ ବିଶ୍ୱାସ କରିପାରିବେ ଯେ ରାଜ୍ୟର ରାଜଧାନୀର ଗୋଟେ ରାସ୍ତା ମଝିରେ ଓ ଦିନଟାରେ ଝିଅଟି ରେପ୍ ହୋଇଗଲା । ଅଥଚ ଜଣେ ହେଲେ ରେପିଷ୍ଟ ଧରା ହେଲା ନାହିଁ କି ଝିଅଟିକୁ ବଞ୍ଚେଇ ହେଲା ନାହିଁ । କାରଣ ଜଣେକ ଉଚ୍ଚପଦସ୍ଥ ଅଫିସର ଓ ଜଣେକ ମନ୍ତ୍ରୀଙ୍କ ପୁଅ ଦୁହେଁ କି ରେପିଷ୍ଟ; ସେଥି କାରଣରୁ ଯଦିଓ ବେଳୁ ଥାନାକୁ ଖବର ସମୟରେ ପହଞ୍ଚିଥିଲା, ଝିଅଟିକୁ ଉଦ୍ଧାର କରିବାକୁ ପୁଲିସ୍ ଆଦୌ ପ୍ରଯତ୍ନ କରି ନଥିଲେ । ପୁଲିସ ଅବାନ୍ତରୁ ଘଟଣାର ତତ୍ତ୍ୱାବଧାନ ଉପରଠାଉରିଆ ଭାବେ କରିଥିଲେ; ନଚେତ୍ ଝିଅଟିକୁ ରକ୍ଷା କରାଯାଇପାରିଥାଆନ୍ତା ।

ସବୁଠୁ ପ୍ରଥମେ ଓ ସବୁଠୁ ବିଶ୍ଳେଷଣାତ୍ମକ ସମ୍ବାଦ ବାହାର କରିଥିଲା ଶାନ୍ତନୁ ତା' କାଗଜରେ । ଏମିତି ଚିହ୍ନାନଖି ସେ ଖବର ବାହାର କରିଥିଲା ଯେ, ଯେ ଭାବିବ ସେ ନିଜେହିଁ ସେ ଟୋକୀକୁ ଉଠେଇ ନେଇ ରେପ୍ କରିଥିଲା । ପ୍ରାୟ ଦୁ' ମାସ ପରେ ତା' ଘରେ ମୁଁ ତାକୁ ଥରେ ଏ କଥା ଥଟ୍ଟାରେ କହିଥିଲି । ସେ ମୋତେ ତା' ଘର ଭିତରକୁ ନେଇଗଲା ଓ ଗୋଟେ ବହି କାଢ଼ି ଦେଖେଇଲା "ପୃଥିବୀ ପ୍ରସିଦ୍ଧ ରେପ୍ ।" କହିଲା, "ମୁଁ ଏଇଥିରୁ କାଢ଼ି ଲେଖିଦେଇଛି । କହିବୁନିଟି, ନହେଲେ ତୋତେ ରେପ୍ କରିଦେବି ।"

ଶାନ୍ତନୁ ଲେଖିଥିଲା : ଭାଗ୍ୟକୁ ଝିଅଟି ଦିନରେ ଆମ ସହରରେ ପହଞ୍ଚିଲା । ଏକଦମ୍ ନଅଟା ଭିତରେ, ଦିନ ଭିତରେ ସେ ତା' କାମଦାମ ସାରିଦେଇ ଇଣ୍ଟରଭ୍ୟୁ ଦେଇ ଫେରନ୍ତା-ଟ୍ରେନ୍ କି ବସ୍‌ରେ ଗାଁକୁ ଫେରି ଯାଇପାରିଥାଆନ୍ତା । ଦୁର୍ଭାଗ୍ୟକୁ ଯେଉଁଠି ତା'ର ଇଣ୍ଟରଭ୍ୟୁ ଥିଲା, ସେ ଜାଗା ସେ ଦେଖି ନଥିଲା । ଭାଗ୍ୟକୁ ତାକୁ ଭଲ ରିକ୍ସାବାଲାଟିଏ ମିଳିଗଲା । ଦୁର୍ଭାଗ୍ୟକୁ ରିକ୍ସାବାଲା ପଛରେ ଯୋଡ଼ାଏ ଟୋକା ଗୋଡ଼େଇଲେ । ଭାଗ୍ୟକୁ ଦିନଥିଲା । ଲୋକବାକ ଅଫିସ ଯିବା ଆସିବା କରୁଥିଲେ । ଝିଅଟି ପାଟିକଲା । ଦୁର୍ଭାଗ୍ୟକୁ କେହି ତା' ପାଟି ଶୁଣିଲେ ନାହିଁ । ଭାଗ୍ୟକୁ ରିକ୍ସା ଗୋଟେ ବଡ଼ ଛକରେ ପହଞ୍ଚିଲା । ସେଠି ଯେ କୌଣସି ମୁହୂର୍ତ୍ତରେ ଶହେରୁ ଅଧିକ ଲୋକ ଥିଲେ । ଝିଅଟି ପାଟିକରିବା ଭିତରେ ଅନ୍ତତଃ ପାଞ୍ଚଶହ ଲୋକ ସେଇ ଛକବାଟେ ଯାଆସ କରିଥିଲେ । ସେଇ ଗହଳରେ ଝିଅଟି ପଛରେ

ଗୋଡ଼େଇଥିବା ଟୋକା ଦୁହେଁ ଶକ୍‌ସାଠୁ ଗ୍ରୁଡ଼ ହେଇଗଲେ । ତା'ପରେ ସେମାନେ ଗୋଟେ ବସ୍‌କୁ କାଟି, ଗୋଟେ ଟେକ୍‌ସୀକୁ ଚପି, ଜଣେ ସାଇକେଲ୍‌ବାଲାକୁ ପକେଇ, ଆଉ ଗୋଟେ ସ୍କୁଟର ସାଙ୍ଗେ ନବେ ଡିଗ୍ରୀ ଧକ୍‌କାରୁ ଦୁଇ ସେଣ୍ଟିମିଟର ଦୂରତାରୁ ରକ୍ଷା ପାଇ ଆଗେଇଗଲାବେଳେ, ଶକ୍‌ସାବାଲାଟି ଡ୍ରେଭରତାର ସହ ଭାରତରେ ପଚଶଟି ଓ ଭାରତ ବାହାରେ ପାଞ୍ଚଟି ହୋଟେଲ ଥିବା ଏକ ସଂସ୍ଥାର ଆମ ରାଜଧାନୀରେ ଥିବା ଏକ ହୋଟେଲରେ ପହଞ୍ଚିଲେ । ଦୁର୍ଭାଗ୍ୟକୁ ସେଇ ସମୟରେ ରେଜିଷ୍ଟ୍ରି ହେବାକୁ ଯାଉଥିବା ଯୁବକ ଦୁହେଁ ଗେଟ୍ ପାଖେ ପହଞ୍ଚିଗଲେ ଓ ଶକ୍‌ସା ଆଗରେ ଠିଆହେଇ ତାକୁ ଫେରିଯିବାକୁ କହିଲେ । ଭାଗ୍ୟକୁ ଟେକ୍ସୀବାଲାଟି କିଛି ନ ବୁଝି ପାରିବାର ଛଳନା କରି ଏଣ୍ଟ୍ରିରୁ ଏକ୍ସିଟ୍‌ରୁ କହିଲା । ଦୁର୍ଭାଗ୍ୟକୁ ହୋଟେଲର ଦାରୁଆନ୍ ଗେଟ୍ ବନ୍ଦ୍ କରିଦେଲା । ଝିଅଟିକୁ ଓହ୍ଲେଇଦବା ପାଇଁ ଯୁବକ ଦୁହେଁ କହିଲେ । ଭାଗ୍ୟକୁ ସମୟ ସକାଳ ସାଢ଼େନଅରୁ ସାଢ଼େ ଦଶ ଭିତରେ, ଯେବେ ସେଇ ନଗରରେ ଯେ କୌଣସି ମୁହୂର୍ତ୍ତରେ ଶହେରୁ ଅଧିକା ଲୋକ ଯାତାୟାତ କରୁଥିଲେ । ଝିଅଟି ବଡ଼ ପାଟିରେ କାନ୍ଦିଲା । କିନ୍ତୁ ଗୋଡ଼େଇଥିବା ଯୁବକଙ୍କ ଭିତରୁ ଜଣେ ଯୁବକ କହିଲା, 'ଏ୍ୟ, ସ୍ୱେ ମିଆଁ ବିବିର ମାମଲା, ଏଥିରେ ମୁଣ୍ଡ ପୂରାଅ ନାହିଁ ।' ଝିଅଟି ପାଟିକରି କହିଲା, 'ସ୍ୱେ ସବୁ ମିଛକଥା, ଏମାନେ ଷ୍ଟେସନରୁ ମୋ ପଛରେ ଗୋଡ଼େଇଛନ୍ତି, ମୁଁ ଗୋଟେ ଇଣ୍ଟରଭ୍ୟୁ ଦେବାକୁ ଆସିଛି, ମୋତେ ନିଶ୍ଚୟ କ'ଣ କରିଦେବେ, ମାରିଦେବେ, ମୋତେ ରକ୍ଷା କରନ୍ତୁ ।' ଏତେ ଜୋର୍‌ରେ ପାଟି କରିବା, ପୁଣି ଏତେ ବ୍ୟାକୁଳ ହୋଇ, ସବୁ ନିରର୍ଥକ ଥିଲା, କାରଣ କେହି ହେଲେ ବାଦୀ କି ପ୍ରତିବାଦୀର ଉତ୍ତର ଶୁଣିନଥିଲେ । ଶକ୍‌ସାବାଲାର ପିଠିରେ ଗୋଟେ ଜାଗାରେ ଏତେବେଳକୁ ଜଳିଲା ଜଳିଲା ପରି ଲାଗିଲାଣି, ଯୋଉଁଠି ଅଉ ଯୁବକଟି ତା' କାଣିଆଙ୍ଗୁଠିର ଗୋଜିଆ ନଖ ଖେଞ୍ଚି କହୁଚି, 'ହେଇ ଭେଷଡ଼, ଗୋଡ଼ ଦେଖେଇଚି ଭୁଷ୍, କଲିଜା କଚଲ କଚଲ କରିଦେବି ।' ଦୁର୍ଭାଗ୍ୟକୁ ଶକ୍‌ସାବାଲାଟି ଏଥର କଥାଟି ବୁଝିଗଲା ଓ ସେ ଝିଅକୁ ଓହ୍ଲେଇଦେଇ ଶକ୍‌ସା ନେଇ ଚାଲିଗଲା । ଝିଅଟି ପାଟି କରି କରି ଅକ୍ଲାନ୍ତ ହୋଇଥିଲା ଓ କ୍ରମଶଃ କାହିଁକି ପାଟିକରୁଚି ବୋଲି ଆଶ୍ଚର୍ଯ୍ୟ ହେଉଥିଲା । କାରଣ କେହି ତା' କଥା ଶୁଣୁନଥିଲେ । ସୌଭାଗ୍ୟକୁ ଗୋଟେ ପୁଲିସ୍ ଗାଡ଼ି ଆସିଲା । ଦୁର୍ଭାଗ୍ୟକୁ ଗାଡ଼ିରେ ଜଣେ ବି ପୁଲିସ୍‌ବାଲା ନଥିଲା, ପଞ୍ଝାଏ ପିଲା, ମାଇକିନିଆ, ପେଟରା, ବାକ୍‌ସରେ ଗାଡ଼ି ଭର୍ତ୍ତି ହୋଇଥିଲା । ଝିଅଟି ପରେ ରେପ୍ ହୋଇଯାଇଥିବାର ଖବର ମିଳିଲା ।

ପ୍ରକାର ଏଇ ପୁଲିସ୍‌ଗାଡ଼ି କଥାରୁହିଁ ତା' ସମ୍ବାଦ ଆରମ୍ଭ କରିଥିଲା । ଏକ, କାହିଁକି ପୁଲିସ୍‌ଗାଡ଼ିରେ ସ୍ତ୍ରୀ ଛୁଆପିଲା ଯାଉଥିଲେ । ଦୁଇ, ପୁଲିସ୍ ଜାଣିଶୁଣି ଏ ରେପିଷ୍ଟ୍ ଦୁହିଁଙ୍କ ବିରୁଦ୍ଧରେ କୌଣସି କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିନଥିଲେ ।

ଝିଅଟିର ବଡ଼ଭଉଣୀ, ଯେ ପିଲାଦିନେ ନ୍ୟାସନାଲ ହାଇୱେ୍ରେ କୁକୁଡ଼ା ବିକୁଥିଲା, ତା' ସାଙ୍ଗେ ଦେଖାହେଲାବେଳକୁ ପ୍ରାୟ ଛ'ମାସ ଗଡ଼ିଯାଇଥିଲା । ସେତେ-ବେଳକୁ ଏ ରେପ୍ କଥା ସମସ୍ତେ ଭୁଲିଯାଇଥିଲେ ଓ ଆଉ ଅନ୍ୟାନ୍ୟ ନୂଆ ରେପ୍ ଓ ସେକ୍ସ୍ ସ୍କାଣ୍ଡାଲ ଜନମାନସରେ ଲୋକପ୍ରିୟ ଥିଲା । ସେ କହିଲା ଯେ, ତା' ସାନଭଉଣୀ, ଯେ ତା' ସାଙ୍ଗେ ଫୁଲହାର ବିକୁଥିଲା, ସେ ଆଦୌ ଏ ଫୁଲ ବିକିବା କାମରେ ମନ ଦେଉନଥିଲା ଓ ବେଳେବେଳେ ପଢ଼ିବ ପଢ଼ିବ ବୋଲି ହମ୍ପର ହମ୍ପର ହୋଇ ବାପମା'ଙ୍କଠୁ ମାଡ଼ ଖାଉଥିଲା । ଭଉଣୀ ସହରତଳିରେ ଗୋଟେ ସରକାରୀ କୁକୁଡ଼ା ଫାର୍ମର ପାଖେ ଓ ରାସ୍ତାକଡ଼ରେ ବୃକ୍ଷରୋପଣ ନୀତିରେ ଗୋଟେ ବାଉଁଶ ଡାଟିର ଝୋପଡ଼ିରେ ରହୁଥିଲା । ତାଙ୍କ ଘର ଶୀର୍ଷରେ ଗୋଟେ ଟିଣ କୁକୁଡ଼ା ପବନରେ ଘିର୍ଘିର ବୁଲୁଥିଲା । ମୁଁ ତାକୁ ଏ କୁକୁଡ଼ା କିଏ ତିଆରି କରିଚି କି ବୋଲି ପଚାରିଲି । ବଡ଼ ଭଉଣୀ କହିଲା ଯେ ତା' ସ୍ୱାମୀ ଯେ ଗୋଟେ ପ୍ରାଇଭେଟ୍ କଣ୍ଟ୍ରାକ୍ଟର ପାଖେ ସାଇପ୍ରିସ୍ତ୍ରୀର ହେଲ୍ପର କାମ କରେ, ସେ ଏ କୁକୁଡ଼ା ବନେଇଛି । ତା'ପରେ ସେ ମୋତେ ତା' ସ୍ୱାମୀର ଆଉ ଦୁଇଗୋଟି ହସ୍ତଶିଳ୍ପ ଦେଖାଇଲା ଓ ମୁଁ ସେଥିରୁ ଗୋଟିଏ କିଣିଲି । ବଡ଼ଭଉଣୀ କହିଲା ଯେ, ପିଲାଦିନେ ସେ ଦୁଇହାତରେ ଦୁଇଟା କୁକୁଡ଼ା ଧରି ରାସ୍ତାର ଗାଡ଼ିମାନଙ୍କୁ ଅଟକେଇଥିଲା ବେଳେ ତା' ସାନଭଉଣୀ ଦୁଇଟି ଫୁଲହାର ଧରି ବିକିବାକୁ ଚେଷ୍ଟା କରୁଥିଲା । ତା' ଆଗରୁ, ସେମାନେ ଯେବେ ଆଉରି ଛୋଟ ଥିଲେ, ସେତେବେଳେ ତାଙ୍କ ବାପା ମା' ତାଙ୍କୁ ବେଳେବେଳେ ଜବରଦସ୍ତି କରି ରାସ୍ତା ଉପରକୁ ଖେଳିବାକୁ ପଠେଇ ଦେଉଥିଲେ । କୌଣସି ଗାଡ଼ିରେ ତାଙ୍କ ଦେହ ବାଜିଗଲେ, ତା' ବାପାମା' ଆଉ ଦଶଜଣଙ୍କ ସାଙ୍ଗେ ସହିତ ହଲ୍ଲାପଟା କରି ଗାଡ଼ିବାଲାଠୁ ପଚିଶ ଶହ ହଜାରେ ଆଦାୟ କରୁଥିଲେ । ତାଙ୍କ ଉପରେ ଆଉ ଦୁଇ ଭଉଣୀ ଥିଲେ, ପ୍ରଥମ ଝିଅ ବାହାହେଇଯାଇ ଥିଲା; ଦ୍ୱିତୀୟ ଝିଅ କାହା ସାଙ୍ଗେ ପଳେଇଯାଇ ପାପରେ ବଞ୍ଚିଥିଲା । ବାପମା'ଙ୍କର ଆଉ ଝିଅ ଦରକାର ନଥିଲା, କିନ୍ତୁ ତାଙ୍କ ଦୁର୍ଭାଗ୍ୟକୁ ଝିଅ ପରେ ଝିଅ ଦୁଇଝିଅ ଜନ୍ମ ହେଲେ ।

ବଡ଼ଭଉଣୀର ପୁଅ ବାହାରେ ଗୋଟେ କୁକୁଡ଼ା ଡ୍ରେସିଂ କରୁଥିଲା ଓ ସେଠି ଜଣେ ଦାଢ଼ିଭଳିଆ ଲୋକ ଗୋଟେ ହାତ ପକେଟରେ ଭର୍ତ୍ତି କରି ଆର ହାତରେ ସିଗାରେଟ ଟାଣୁଥିଲା । 'ହେଲି ଜନମ କରି ପାପ, ପୁଣି ଜନମ ପୁଣି ପାପ !' ବଡ଼ଭଉଣୀ କହିଲା, 'ହେଲେ ବି ଏଥିରୁ ଆମର ସବୁଦିନ ପ୍ରାୟ ମାଉଁସ ତରକାରି କି ଅଣ୍ଡା ହେଇଯାଏ ।' ପୁଅ କୁକୁଡ଼ାର ଗୋଡ଼, ଅନ୍ତନାଡ଼ୀ ଅଲଗା କରି ରଖୁଥିଲା ଓ ଡ୍ରେସିଂ ସାରିବା ପରେ ଦାଢ଼ୁଟି ଦୁଇଟଙ୍କା ଦେଲା ଓ କହିଲା, 'ଏଇ ସେ ସେପଟ ଟା ମିଶାନା ।' ପୁଅ ଘର ଭିତରକୁ ଗଲିଗଲା ଓ ସେଇ ସମୟରେ ଘରଭିତରୁ କିଏ

ଜଣେ ବାଲମୁଣ୍ଡାଇଲ, ହାତଗୋଡ ଫାଙ୍କଟେଇ, କଡ଼ଗୁଡ଼ିକ ହେଲେ ପବନରେ ଉଡ଼ିଆସିବା ପରି ଆସିଲା । ଆମ ଗାଁରେ ମଶାଣିରେ ଗୋଟେ ଶିମୁଳି ଗଛ ଅଛି, ଥରେ ଶୀତ ଶେଷଆଡ଼କୁ ସିଲଦିନେ ବୁଲି ବୁଲି ଆମେ ସେଇଆଡ଼େ ବୁଲି ଯାଇଥିଲୁ । ପବନରେ ପବଧାନ ଶିମୁଳଗଛ ପିଶାଚୁଣୀ ଭୂତୁଣୀ ନା ଡେଙ୍ଗାଡାଇଣୀ ପରି ଅଳନ୍ତ ଦୋହଲୁଥିଲା, ସେ ଭୟରେ ଆମ ସମସ୍ତଙ୍କୁ ଜ୍ୱର ହୋଇଯାଇଥିଲା—ସେ ସ୍ମୃତିରେ ମୋର ସେ ଡର କଥା ମନେପଡ଼ିଲା । ତା'ପରେ ସେ ସ୍ତ୍ରୀ ଲୋକଟି ଯେତେବେଳେ ଜଙ୍ଘ ଉପରକୁ ତା' ଶାଢ଼ୀ ଟେକି, ଗୋଡ ଫାଙ୍କଟେଇ, ତା' ଯୋନି ଦେଖେଇ ଦୌଡ଼ି ଆସିଲା ଓ ତା' ବଡ଼ଭଉଣୀ 'ଏଇଟା ହେଇ ଟୋକା, ଦେଖୁନ କ'ଣ କରୁଛ ତା' ହାଲ୍' ଓ କୁକୁଡ଼ା ମାଉଁସ ନେଇ ଯାଉଥିବା ବାବୁଟି ପକେଟରୁ ହାତକାଢ଼ି, ସିଗାରେଟ ଚୋପାଡ଼ି ଭୂତ ଦେଖିଲା ପରି ଡରି ପଳେଇଲା, ମୁଁ ଭାବିଲି, 'ଧନ୍ୟ ନାଁ ତ ସେ ଟୋକା, ନାଁ କଏ ଏଇ୍ଲ ରେପ୍ କରିବ ।' ସେ ହସିଲା ମୋ ମନକଥା ଜାଣିଦେଲା, ସେମିତି ମୋ ମୁହଁକୁ ଲଣ୍ଠାଏ ଛେପ ପକେଇଲା ।

ବଡ଼ଭଉଣୀ ଏଥର ତା' ସାନଭଉଣୀକୁ ( ସେ ବଡ଼ଭଉଣୀର ବୃଦ୍ଧୀୟା ପରି ବସୁଥିବା ଦିଶୁଥିଲା ) ଗୋଟେଇ ଘର ଭିତରକୁ ପଠେଇଦେଲା । 'ଅନେକାଳ ତା'କୁ ଦେଖିବାକୁ ବି କଏ ଆସୁନାହାନ୍ତି', ବଡ଼ଭଉଣୀ କହିଲା, 'ଆଗରୁ ଯୋଉମାନେ ଦେଖିବାକୁ ଆସୁଥିଲେ, ତାଙ୍କଠୁ ପାଞ୍ଚଦଶ ମିଳୁଥିଲା । ଏବେ ତ ତା'କୁ ଦେଖିଲେ, କୋଉ କାମକୁ ନୁହେଁ, କେମିତି ପେଟ ତା'ର ପୋଷା ହବ ?' ବଡ଼ଭଉଣୀ ଏକଥା ବି କହିଲା ଯେ, ଆଗରୁ ଅବଶ୍ୟ ସେ ଏମିତି ପାଗଳୀ ନଥିଲା । ସେ ପୁଲିସ୍ ଆଗରେ ଠିକ୍ ଠିକ୍ ଜବାନବନ୍ଦୀ ଦେଇଥିଲା, କୋର୍ଟରେ ଠିକ୍ ଠିକ୍ କଥା କହିଥିଲା । ଅପର ପକ୍ଷର ଓକିଲ ଯେତେବ କହିଲେ ଯେ, ସେ ଟୋକା ଦହିଙ୍କ ସହ ତା'ର ପ୍ରେମ ସମ୍ପର୍କ ଥିଲା, ସେ ଓକିଲଟି କହିଲା, 'ତୋ ମା'ର ଥିବବେ !' ତଳକୋର୍ଟରେ ଟୋକା ଦହିଙ୍କୁ ଦଶବର୍ଷ ଜେଲଦଣ୍ଡ ହେଲା, ତାଙ୍କୁ କୁଷ୍ଠରୋଗ ହେଉ ଓ ଜେଲକୁ ଗଲାବେଳେ ସେମାନେ କହିଲେ, ଶାଳୀର କି ଯାଚି, ଦଶବର୍ଷ ପରେ ବି ମନେରହିବ । ଛଅମାସ ପରେ ସେମାନେ ଉପର କୋର୍ଟକୁ ଯାଇ ଜାମିନ୍‌ରେ ଖଲାସ ହୋଇ ଫେରିଲେ; ଏଥର ସେମାନେ ସେଇ ହୋଟେଲକୁ ଗଲେ, ଯେଉଁଠି ଦରୁଆନ ଗେଟ୍ ବନ୍ଦ କରିଦେଉଥିଲା, ଝିଅ, ଶନ୍‌ଦାବାଲ ଓ ତାଙ୍କ ମୁହଁ ଉପରେ । ଏଥର ଦରୁଆନ୍ ଗେଟ୍ ବନ୍ଦ କଲାନାହିଁ ଓ ତାଙ୍କୁ ସାଲ୍ୟୁଟ୍ ମାରିଲା । ହୋଟେଲରେ ସାନଭଉଣୀଟି କେହି ଶୁଣୁନଥିବା ଶ୍ରୋତାଙ୍କ ଆଗରେ ଗୀତ ଗାଉଥିଲା, ଲୋକେ ଖାଇବା ପିଇବାରେ ବ୍ୟସ୍ତଥିଲେ ଓ ଟୋକା ଦହିଁ ସମସ୍ତଙ୍କ ଆଗରେ ସେ ଝିଅଟିକୁ ବଳାତ୍କାର କଲେ ଓ ସମସ୍ତେ

ଭବଲେ କ'ଣ ସିନେମା ହେଉଥିବ କି କ'ଣ, କି ଡ୍ରାମା, ଡ୍ରାମା ଓ ହେଇଠି ସମସ୍ତଙ୍କ ଆଗରେ ଆଉ ଥରେ ସାନଭଉଣୀକୁ ଟୋକା ଦହେଁ ରେପ୍ କଲେ । ତା'ପରେ ସାନଭଉଣୀଟି ପାଗଳୀ ହୋଇଗଲା ଓ ସମସ୍ତଙ୍କ ଉପରକୁ ଥୂଃ ଥୂଃ ଛୁପ ପକେଇଲା ଓ ବାଘୁଣୀ ହୋଇ ଶୀତଦିନର ଶିମୁଳି ଗଛପରି ଦିଶିଲା ।



# ଧର୍ମପଦ

ବସ୍‌ଷ୍ଟାଣ୍ଡ, ଯେଉଁଠି ଗୋଟିଏ ବରଗଛ ବ୍ୟତୀତ ଅନ୍ୟ ଆଉ କିଛି ନଥିଲା, ଓ ଏବେ ଜଣେ ଉଦ୍‌ଯୋଗୀ ଗରିବ ବ୍ରାହ୍ମଣ ଯେଉଁଠି ଗ୍ରେଟ ଟିଣରେ 'ମା ଓଁ କାଳୀ' ଲେଖି ପଥରରେ ସିନ୍ଦୂର ବୋଳି ଅନୁଷ୍ଠାନ କରୁଥିଲା ( ଗ୍ରେଟ ଟିଣରେ 'ମା ଓଁ କାଳୀ' 'ମାଙ୍କାଁଲୀ' ପରି ଦିଶୁଥିଲା ଓ ବହୁଥର ବସ୍ ଅଟକିଲେ କେହି ନା କେହି ବସ୍‌ଯାତ୍ରୀ କ'ଣ ଲେଖା ହୋଇଛି ବୋଲି ପଢ଼ିବାକୁ ଚେଷ୍ଟାକରି ପାରୁନଥିଲେ ) ସେଇଠି ଧର୍ମପଦ ପହଞ୍ଚିଲା ବେଳକୁ କିଏ ଜଣେ ଡାକିଲା :

ଫେରିଆସ ଧର୍ମପଦ ।

ଧର୍ମପଦ ପଛକୁ ଅନାଇଲା । ହେଇ ସେଠି ପୋଖରୀର ପାଣି ଚହଲି ଯାଉଛି, ଭଇଁସି କାଟୁଛି ମାଛ । ଶେଉଳ ହବ ବୋଧେ । ଗାଁ ପିଲା ଦୁଇଜଣ ହୋହା ଘୋ ଘୋ କରି ସଡ଼କରେ ପହଁରି ଯାଉଛନ୍ତି, ଦୋଲ ପାଇଁ ବଜାରକୁ ଯାଉଛନ୍ତି ଜିନିଷ ଆଣିବେ । ବସ୍‌ଷ୍ଟାଣ୍ଡ ( ଯାହା ମା' ଓଁ କାଳୀଙ୍କ ଦ୍ୱାରା ଜବର ଦଖଲ ହୋଇଥିବା ଏକ ବରଗଛ ବ୍ୟତୀତ ଆଉ କିଛି ନୁହେଁ )ରୁ ଧର୍ମପଦ ଫେରିଆସିଲା ।

'ଚାଲ ପଳେଇବା', ଧର୍ମପଦ ତା' ଭାଇକୁ, ଯେ ତାକୁ ବସ୍ ଚଢ଼େଇ ଦେବାକୁ ଆସିଥିଲା, କହିଲା । 'କଣ ହେଲା ? ସିନୁନ ? ମନ ଗୋଡ଼େଇ ହଉଛି ?' ଭାଇ କହିଲା ସିନା, ତା'କୁ ବି କାନ୍ଦ ଲାଗିଲା । 'ଚାଲ୍ ଜଲଦି ପଳେଇବା, ବସ୍ ଆସିବା ଆଗରୁ' ଧର୍ମପଦ କହିଲା ଓ ଲୁଚୁଲାପରି ଧରି ଲମ୍ବା ଲମ୍ବା ପାହୁଣ୍ଡ ପକେଇଲା ଗାଁ ଆଡ଼କୁ ।

ଦୁହେଁ ମୁଣ୍ଡତଳକୁ ପୋତି ଗାଁକୁ ଫେରିଲେ । 'ବାପ ଟେକେରେ ଗେଜେରେ ହବ, ଦେଖିବୁନ' ଭାଇ କହିଲା ।

କିନ୍ତୁ ଗାଁରେ ପଶୁ ପଶୁ ଭାଇ ହୁଲସ୍ଥୁଲ କରିଦେଲା, 'ଧରମା ପଳେଇ ଆଇଲା, ଧରମା ପଳେଇ ଆଇଲା ।

'କରେ କ'ଣ ହେଲା, ଫେରିଆସିଲୁ ?' ଦାଣ୍ଡରେ ବସିଣା ବୁଣ୍ଡୁବୁଣ୍ଡୁ ବାପ ଉଠି-ଆସିଲା ଓ ପଚାରିଲା । ଧର୍ମପଦ କିଛି କହିଲା ନାହିଁ । ଘର ଭିତରକୁ ପଶିଗଲା । ମାନ୍ଦି

କାନ୍ଥରେ ଟେକା ହୋଇଥିବା ରଙ୍ଗଛଡ଼ା ଅଇନାରେ ଆଖିକୁ ଅଟେଇଲା, ଲୁହ ଦିଶୁଚି କି ନାହିଁ । 'ଏଇଟା ବାପା ନା ଯମ ?' ସେ ନିଜକୁ ଅଇନାରେ ପଚାରିଲା ।

ବାପ ବାଣ୍ଟରେ ବଡ଼ବଡ଼ କରୁଛନ୍ତି । ଦୁଇଟ୍ରିଜଣ ବାଣ୍ଟରେ ଠିଆ ହୋଇଛନ୍ତି । 'ଲେପଟେଇ ରହିଥା, ଘାଣ୍ଟିହେଇ ହେଇ । ମାଟି କାଦୁଅ ଗୋବରରେ । ମୁଠେ ଡାନା କି ଟୋପାଏ ପାଣି ପାଇବ ନାହିଁ । ବାହ୍ମଣି କୁଳରେ ଜନ୍ମହେଲ ମୂଲ ଲାଗିବାକୁ ଅଯୋଗ୍ୟ ହେଲ । କୋଉ ରଜା ମହାରାଜା କୋଣାର୍କ ମନ୍ଦିର ଗଢ଼ୁଛନ୍ତି ଯେ ତମକୁ କାମ ଖଞ୍ଜିଦେବେ ? ଭଲକରି ପାଠ ତ ପଢ଼ିଲ ନାହିଁ । ଯାହା ଦୁଇଅକ୍ଷର ପାଠ ପଢ଼ିଲ, ସେହାରକୁ ବାହାର ଯାଇଥାନ୍ତ ଚାକିରି ହେଲେ କରିଥାନ୍ତ । ଗାଁରୁ ଯେତେ-ଯେତେ ପିଲା ଗଲେ, କାହିଁ କୁଆଡ଼େ ଉଠିଗଲେ, ହାକିମ ହେଲେ । ଜାଦନାହାଣ ବାଉଁଶ ଧରି ବାହ୍ମଣି ବୋଲି ବଡ଼େଇ କରି ଆମେ ମୂର୍ଖଙ୍କୁ ଏଇଠି ରହିଲେ ଯେ, ଏ କୁଳରୁ ଗଲେ ଲେଙ୍ଗୁଟିକୁ ଧ୍ୱଜା ବୋଲି ଗାଡ଼ି ଉଡ଼େଇଲେ ।' ବାପା କଣ୍ଠସ୍ୱର ଧୀର ହୋଇଗଲା ଓ ସେ ମଶିଣା ବୁଣାରେ ମନଦେଲା ।

କାହିଁକି ମୋତେ ଗୋଡ଼େଇ ପକଉଛି ଏ ମାଟି ? ମୁଠାଏ ଖାଇବାକୁ କାହିଁକି ଦେଇ ପାରିବ ନାହିଁ । ମୁଁ ଭଲ ତ ମାଗୁନାହିଁ, ଖଟିବି, ଖାଇବି, କାହିଁକି ତଡ଼ି ପକଉଛ ମୋତେ ? ଦୁଧଘିଅ ତ ମାଗୁନାହିଁ, ତୂଳାଶେଯ, ରାଜପ୍ରାସାଦ ତ ମାଗୁନାହିଁ, ମୋର ହକ ମୂଲ କାହିଁକି ଦେବୁନାହିଁ ।

ଯଜ୍ଞ, ଗାଁର ବଡ଼ ଚାଷୀ ଯାଉଥିଲା, କହିଲା, 'ହଇରେ ଚାଷୀ ହାତରେ ପଇସା ହେଲେ ସିନା ତମକୁ ସେ ପଇସା ଦେବ ? ଚାଷୀକୁ ତ ସରକାର ମାରି ପକଉଛି, ସେ ପଇସା କେଉଁଠୁ ଆଣିବ ? ତମକୁ ଦେବ ? ଧାନ ଚାଉଳ ଦାମ ବଢ଼ିଲେ ସିନା ତମ ମୂଲ ବଢ଼ିବ ।'

ଧର୍ମପଦ ଗାଁମୁଣ୍ଡ ଉଇହୁଙ୍କାର ଠାକୁରାଣୀକୁ ପଚାରିଲା । ଗୋଚର ପଡ଼ିଆର ଘାସକୁ ପଚାରିଲା, ପୋଖରୀର ଫୁଲକୁ ପଚାରିଲା, 'କାହିଁକି ତଡ଼ି ପକଉଛ ମୋତେ ?'

'ଆମେ ତଡ଼ୁନାହୁଁ' ଠାକୁରାଣୀ କହିଲା, ଘାସ କହିଲା, ଫୁଲ କହିଲା, ବହନ୍ତ ପବନ କହିଲା, ନଈପଠାର କାଶତଣ୍ଡୀ କହିଲା । ଗୁହାଳରୁ ଛେଳି ଓ ବଳଦ କହିଲେ । ଆମ୍ବଗଛରୁ କୋଇଲି କହିଲା ।

'ଫେରଆସିବୁ ଭଲ କରିବୁ', ତା' ମାଳକସ୍ତା ପିନ୍ଧା ସାନଭଉଣୀ କହିଲା ।

ହେଲେ ବାପା ବଡ଼ବଡ଼ କଲା । ଆଉ ଦୁଇଜଣ ଆସି ଜୁଟିଗଲେ ।

ପୁଅକୁ ବୋଉ କହିଲା, 'ବାପ ମହାଜନଠୁ କରଜ ଆଣିଥିଲା ତୋତେ ଝାଟଚର୍ଚ୍ଚା ଦେବାକୁ। ତୋ ପାଇଁ ତାଙ୍କ ଖାଇଆସର ଖାଇ ପାଖକୁ ଚିଠି ଲେଖିଥିଲା। ଖାଉରିଖେଲିଲୁ। ତୋ ବାପା ତ ତୋର ଶତ୍ରୁ ନୁହେଁ। ଭଲ ପାଇଁ କହୁଚି। ତୋ ଯିବାକୁ ତ ସେ ଆଶ୍ରା କରିନାହିଁ। ବାହ୍ମଣି କୁଳରେ ଜନ୍ମହେଇ ହେଁସ ଚପ ବୃତ୍ତି କରିବ ପରେ, ବାପ ତୋର କାହା ଉପରେ ନିର୍ଭର କରିବ ନାହିଁ। ତା' ଧିଅ ଆଜିକାଲି ଭଲ ଚଳୁନାହିଁ; ସେଥିପାଇଁ ବେଶି ଖେଟେଚେର ଖେଟେଚର କରୁଚି, ତୋ ଖାଉଣ୍ଟ ବି ତ କାମ ମିଳୁନାହିଁ। ମଜୁରି ମିଳୁନାହିଁ, ଚଷାଭୂଷାଙ୍କ ପେଟକୁ ତ ଅନ୍ନ ନାହିଁ ସେ କ'ଣ ମଜୁରି ଦେବେ। ଆମ କୁଳରୁ କେତେ କେତେ ସହରକୁ ବାହାରିଗଲେ, ବଡ଼ଲୋକ ହେଲେ। ତୁ ତ ଅପାରଗ ନୋହୁଁ, ପାଠ ଦି'ଅକ୍ଷର ପଢ଼ିଚୁ, ତୁ ବି ଯିବୁ, ଭାଗ୍ୟରେ ଥିଲେ ବଡ଼ଲୋକ ହେବୁ। ଭାଗ୍ୟରେ ନଥିଲେ ଫେରିଆସିବୁ, ତୋ ପାଇଁ କ'ଣ କିଏ ଦାଣ୍ଡଦୁଆର ବନ୍ଦ କରିଦେଉଛନ୍ତି ?'

ଧର୍ମପଦ ଦୌଡ଼ି ଦୌଡ଼ି ଦାଣ୍ଡକୁ ଚାଲିଗଲା। କେହି ଶୁଣୁନାହାନ୍ତି ଏଠି ତାକୁ ! ନାଁ ମୁଁ ପଳେଇବ।

ଚନ୍ଦ୍ରପାଢ଼ୀ ପାଖେ ଦଶଜଣ ଘେରିଗଲେ। ଆଜି ଗାଁର ଏକମାତ୍ର ସର୍ବଜନପ୍ରିୟ ସମ୍ବାଦ ଥିଲା ଧର୍ମପଦ ବିଦେଶ ଯାଉଥିଲା, ଉଭରାଇ ଫେରିଆସିଲା। 'କ'ଣ ଲାଗୁଚି ନରସିଂହଦେବଙ୍କ ଜାଣିନାହାନ୍ତି', କିଏ ଜଣେ ଅଜାଣ୍ଟାନିଆ ଲୋକ କହିଲେ।

ନାଁ ନାଁ ମୁଁ ଫେରିନାହିଁ, ସେ ଯିବ। କେବେ ? ଏଇ ଆଉଥରେ ଅନୁକୂଳ କାଢ଼ି ଦେଲେ। ମାନେ କେବେ ?

ହୋରି ପରେ। ହୋରି ପରେ। ଏ ଉତ୍ତର ବି ସେ ନ ପଚାରିବା ଲୋକଙ୍କୁ ଦେଇଗଲା। ସେଠୁ ଠାକୁର ଘର। ମୋତେ କାମ ଦିଅ, ମୋତେ କାମ ଦିଅ। ଠାକୁର ବିମାନର ଗୋଟେ ଭଙ୍ଗାଗୋଡ଼ ଜଣେ ଟେକାଉଥିଲା; ତା' ହାତରେ ହାତୁଡ଼ିଥିଲା। 'ଗୁଡ଼ ଗୁଡ଼, ମୋତେ ଦେ, ଲୋକ ପୁଣି ବେଙ୍ଗଲା ବୁଲିବେ।' ଧର୍ମପଦ ଗୋଡ଼ ଟେକାଇ ଦେଲା, ଗୋଟେ ଦି'ଟା କାଠଫୁଲ ଖସିପଡ଼ିଥିଲା, ଯାଙ୍କେ ଯାଙ୍କେ ଫୁଲ କାଟି ଖଞ୍ଜିଦେଲା। କାହାର ଗୁଳ ହୁଗୁଳିଯାଇଥିଲା ବାନ୍ଧିଦେଲା, କାହା ଲଙ୍ଗଳ ବେକାଗିଆ ହୋଇଥିଲା, ଖିଲି ଦେଇ ଆଣ୍ଟିଦେଲା ଓ କହିଲା, ହୋରି ସରିଲେ ମୁଁ ଯିବି। କାହା ଶଗଡ଼ ଅଖରେ ଚକ ବସୁନଥିଲା, ବସେଇ ଦେଲା ଓ କହିଲା ହୋରି ପରେ ଯିବି। ଚାମିନି ବୋଲି ଗୋଟେ ଝିଅ, ସେ ତାକୁ ପଦେ ପଦେ ଥଟ୍ଟା କରେ, ସେ କହିଲା, 'ସତରେ ଯିବୁ ନା, ମୁଁ ଯାଉଛି ମୋତେ ଧ ?' ଧର୍ମପଦ କହିଲା, 'ଆଣ ଆଣ ତୋ ମୁଣ୍ଡରେ ଦି'ଟା ଖିଲ ହୁଗୁଳି ଯାଇଚି ଦି'ପାହାର ହାତୁଡ଼ିରେ ଦିଏ, ଆଣ୍ଟି ଯିବ।'

## ଦୁଇ

ହୋରି ପରେ ଦିନେ ସକପଟା ହୋଇ ଭିଣୋଇ ଲେଖିଦେଇଥିବା ଚିଠି ଧରି ଧର୍ମପଦ ବସ୍ ପାଇଁ ବରଗଛ ଚୂପକ ବସ୍‌ଷ୍ଟାଣ୍ଡ୍‌ରେ ଅପେକ୍ଷା କଲା। ତାକୁ କାନ୍ଧ

ମାଡ଼ୁଥିଲା; କିନ୍ତୁ ଅଜ୍ଞାତବାସକୁ ଯାତ୍ରା, ଯାତ୍ରାର କଙ୍କାଳ, ପହଞ୍ଚିବା ଉତ୍କଣ୍ଠାରେ ଅନିଶ୍ଚିତତା ଓ ଭୟ, ଦେହର କପଟ ହୋଇଥିବ, ସେଠି ଗାଁ ପରି ସମସ୍ତେ ସମସ୍ତଙ୍କୁ ଜାଣିଥିବେ ତ, ନୂଆଲୋକଟିଏ ପହଞ୍ଚିଲେ, କିଏ ଆସିଲା, କିଏ ଆସିଲା ବୋଲି ହୁରି ପଡ଼ିଯିବ ତ, ଓ ସେମାନେ ଆଶ୍ରୟ ଦେଇଦେବେ ତ, ଓ ଭଉଣୀଙ୍କର ସେ ଖାଇଅଖା ଖାଇଟି ତାକୁ ଆଦରିବ, କି ଚିହ୍ନିବ ନାହିଁ, ଏସବୁ ତାକୁ ବାନ୍ତକରି ତା' ଲୁହରେ ଫେଭରିଲ ମାରିଦେଲେ । ସେଇ ପାହାନ୍ତା ପହରର କୁହୁଡ଼ିର ରାସ୍ତାରୁ ସେଇଟା କ'ଣ ନରଗନ୍ତ, ବଳଦଗାଡ଼ି କି ବସ୍ ବୋଲି ଚିହ୍ନି ଚିହ୍ନି ବସ୍ ପହଞ୍ଚିଗଲା ଓ ତାକୁ ଜାବ ମାଡ଼ିଲା ଓ ସେ ପୋଟଳା ଗାମୁଛା, ବୁଟ୍, ବସ୍ତାନି, ବଟୁଆ ଧରି ଲୋକଗହଳି ଠେଲି ପଶିଗଲା, କ'ଣ ଗୋଟେ ତା' ଗୋଡ଼କୁ ମାଡ଼ିମାଡ଼ି ମକଚୁଛି ଓ ସିଟ୍ ଖୋଜି ଖୋଜି କିଏ ତାକୁ ଗାଳିଦଉଛି, 'କିରେ ଟୋକା ଆଉ ଜାଗା ଅଛି ନା ଏଠିକି' ଓ କୋଳ ଉପରେ କୋଥଳି, ଗୋଡ଼ ତଳେ ବୁଟ୍, ଆଣ୍ଠୁ ଉପରେ ବସ୍ତାନି ଓ ବଟୁଆ ଥୋଇ-ଦେଇ ଆଶ୍ୱସ୍ତ ହେଇ ଲୋକଗହଳିରେ ଅଦୃଶ୍ୟ ହେଇଥିବା ତା' ଖାଇକୁ ଖୋଜି ଖୋଜି କିଏ ଜଣେ ଡାକିଲା,

ଫେରିଆସ ଧର୍ମପଦ !

କିଏ ଡାକିଲା, କିଏ ? ପବନ ଖୁନ୍ଦା ଖୁନ୍ଦା, ବସ୍‌ରେ ନିଃଶ୍ୱାସ ନେଇହୁଏ ନାହିଁ । ଝରକା ଦିଶୁ ନାହିଁ କି 'ମାଙ୍କାଁଲୀ' ସାଇନ୍‌ବୋର୍ଡ଼, କୋଉ ଅନ୍ଧାର ସୁଡ଼ଙ୍ଗ ଭିତରକୁ ସେ ପଶିଯାଏ, ଆତ୍ମହତ୍ୟା କରିବାକୁ ଯାଉଥିବା ପରି ।

[ ସାନଦେଈ ତା'ର ଗାଧୋଇ ଯାଇଥିଲା, ସ୍ରୋତବଢ଼ା ହେଇଥିଲା, ଲୁଣି କାଠୁଆ ଥୁଆ ହେଇଥିଲା, ସେ ଅପେକ୍ଷା କରି ଜରି ଲୁଣି କାଠୁଆ କଗୃଡ଼ି ଦେଲା, ସବୁ ଲୁଣି ବନ୍ଦ ହେଇଗଲା, ହା' ହଲ୍ଲୋଳ ହେଲା ଗ୍ରାମଅଡ଼େ, ଦେଖି ଦେଖି, ମାଛଜାଲ ଧରି ବଢ଼େଇ ସାଇ ଓ ବ୍ରାହ୍ମଣ ସାଇ ଓ କଣ୍ଡରା ସାଇ ଓ ଧୋବା ସାଇର ଟୋକାମାନେ ତୋଳି ଆଣିଲେ ତା' ସାନଦେଈକୁ ପୋଖରୀ ଭିତରୁ, ବଡ଼ମାଛ ପରି ଦେହ, ନେଫିଡ଼ିଲା ପରି ମୁହଁ, ଭଉଣୀ ଚାଲିଯାଏ ଫେରେ ନାହିଁ । ବୋଉ ଘାଟରେ ହାଡୁଗ୍ରେପା ପୋଡ଼ି ଚୁଣି କରି ଖାଇଥାଏ, ସ୍ନାରୁ ଖୋଲ ଆମ୍ଳୁ ଦେଇ ରଖିଥାଏ ପୁଅ ବାପଙ୍କ ପାଇଁ ।]

ଏଥର ସେ ବସ୍ ଭିତରେ, ଏତେ ଲୋକଙ୍କ ଗହଳିରେ କାନ୍ଦିଲା, ତୁହାକୁ ତୁହା । ଜଣେ ସହଯାତ୍ରୀ ଆସି କାନ୍ଦର କାରଣ ବୁଝିଗଲା ଓ ଠୋ'ଠୋ' ହସି କହିଲା, 'ଆରେ ତୁ ତ ରାଉରକେଲା ଯାଉଛୁ କୋଉ. ସୁରତ ନା ବମ୍ବେ ଯାଉଛୁ ଯେ ଏମିତି କାନ୍ଦୁଛୁ ?'

# ତିନି

ଭିଡ଼ରବେଳରେ ସମସ୍ତେ କର୍ମବ୍ୟସ୍ତ ହେଉଥିଲେ, ଯଦିଓ କାହାରି ଦେହରୁ କାମିନା ଲୋକର ଗନ୍ଧ ଆସୁନଥିଲା । ନାଗର ଭାଇଅଁରଆ ଦେଢ଼ଶୁର ଘର ପାଇଲା ବେଳକୁ ସନ୍ଧ୍ୟା । ଦେଢ଼ଶୁର, ଯାହାଙ୍କୁ ଧର୍ମପଦ ଭାଇନା ବୋଲି ଡାକେ ନାହିଁ, ସେ ନାଇଟ୍ ସିଫ୍ଟ୍‌ରେ ବାହାରି ଯାଇଥିଲେ । ତାଙ୍କ ସ୍ତ୍ରୀ ଯାହାଙ୍କୁ ସେ ଭାଉଜ ବୋଲି ଡାକିଲା, ସେ ତାକୁ ଚିହ୍ନିଲେ ନାହିଁ, କି ବସିବାକୁ କହିଲେ ନାହିଁ, କି ଆଉ କେବେ ଆସିବାକୁ କହିଲେ ନାହିଁ । ସେଠୁ ଫେରି ରାତିରେ ଧର୍ମପଦ ତା'ର ପାଖଟି ଜିନଷକୁ ବାନ୍ଧି ଷ୍ଟେନ୍‌ପରି ପୋଷାକ ଗୋଟେ କଲଭର୍ଟ୍‌ରେ ଶୋଇଲା, କଲଭର୍ଟ୍ ପାଣିରେ ନିତ୍ୟକର୍ମ ସାରିଲା, ଚା' ଦୋକାନରୁ ଦୁଇ ତିନି ଚା' ପିଇଲା ଓ ସେତେବେଳେ ଦେଖିଲା ଯେ, ତା' ଭଉଣୀର ସ୍ୱାମୀର ଭାଇଅଁରା ଦେଢ଼ଶୁରର ଠିକଣା ହଜେଇ ଦେଇଛି । ଗଲାକାଲି ସେ ଯେଉଁ ରାସ୍ତାରେ ଯାଇଥିଲା, ଏବେ ସେ ରାସ୍ତା ସେ ଭୁଲିଯାଇଥିଲା, ଏବେ ଗାଁକୁ ଫେରିଯିବ କି କଣ ଗୋଟେ ଧନ୍ଦା ଖୋଜିବ ଏ ଭୟାନକ ସହରରେ, ସେ କଥା ସ୍ଥିର କରିପାରିଲା ନାହିଁ । ପେଣ୍ଟ୍‌ର ଭିତର ମୁଣାରେ ସେ ଫେରିବା ଭଡ଼ା ଭଲ କରି ଲୁଚେଇ ଦେଲା ଓ ତା' ବୁଜୁଲାର ଷ୍ଟେନ୍ ପୋଷାକ ପୋଷାକ ସହରରେ କାମ ଖୋଜିଲା । ସେହି ଭୟଙ୍କର ପୁନରାବୃତ୍ତି ସହରରେ ଖୋଜି ଖୋଜି ତା' ସମ୍ପର୍କୀୟ ଭଉଣୀର ଘର ଆଉ ଠାବ ହେଲା ନାହିଁ । ତିନଦିନ ପରେ ଗୋଟେ କଣ୍ଟ୍ରାକ୍ଟରର ପାଖେ ତାକୁ କାଠକାମରେ ହେଲ୍ପରି ମିଳିଗଲା, ସେଠୁ ଆଉ ଗୋଟେ ଜାଗାରେ । କ୍ରମେ ସେ କାମ ଶିଖିଗଲା, ମଜୁରିର ମୋହ ତାକୁ ଲାଗିଗଲା, ସହରର ଚାଲିଚଳଣି ତା'ର ଅଭ୍ୟସ୍ତ ହୋଇଗଲା ଓ ଶିଫ୍ଟ୍ ଚେଞ୍ଜ୍ ସମୟରେ ଦଳଦଳ ଲୋକ ଛୁଟିଯାଉଥିବାର ଦେଖି ତା' ଜୀବନର ଲକ୍ଷ୍ୟ ସେ ନିର୍ଦ୍ଦିଷ୍ଟ କରିନେଲା । ସେ ଯେଉଁଠି କାମ କରୁଥିଲା, ରାତିରେ ସେଇଠି ଶୋଇଯାଉଥିଲା, ହେଲେ କାମ ମିଳିଯାଉଥିଲା, ମଜୁରି ବଢ଼ୁଥିଲା ଓ ଗୋଟେ ଘର ଭଡ଼ା ନେବା ତା'ର ଜରୁରୀ ହେଲା ।

ଘର ମିଳିଗଲା; ଘର ଖୋଜି ଦେଇଥିବା ଲୋକଟି ଗୋଟେ ପ୍ରହେଳିକାମୟ ହସ ହସିଦେଇ ଚାଲିଗଲା । ଘରଟି ସରକାରୀ କିମ୍ବା କାରଖାନା ଜାଗାରେ ହୋଇଥାଏ, କିନ୍ତୁ ଏ ଅଞ୍ଚଳର ସବୁ ସରକାରୀ ଜାଗା ଜଣେ ଓସ୍ତାଦ୍ ଭଡ଼ାରେ ଲଗେଇଥାଏ ଓ ଭଡ଼ା ଅଦାୟ କରୁଥାଏ । ସେ ଜମିରେ ଝୋପଡ଼ିଠୁ ଆରମ୍ଭ କରି ତିନିମହଲା ପର୍ଯ୍ୟନ୍ତ ଘର ଥିଲା ।

ଧର୍ମପଦ ଯେଉଁ ଝୋପଡ଼ିରେ ଘର ପାଇଲା, ସେଠି ଗୋଟିଏ କୋଠରୀ ଥିଲା । ଝୋପଡ଼ିର ମାଲିକାଣୀ ମାଟିରୁ କୋଇଲା ବାଛୁଥିଲା, ମାଟି ବେଢ଼ିଥିଲା,

କୋଠରିଟି ଅଲଗା ଥିଲା । ଧର୍ମପଦକୁ ଅନେଇଦେଇ ସ୍ତ୍ରୀ ଲୋକଟି ରାଗିଗଲା ଓ ମୁହଁ ବୁଲେଇ କୋଉଠିକି ଚାହିଁଲା । 'ମୁଁ ରହିବା ପାଇଁ ଘର ଖୋଜୁଛି', ଧର୍ମପଦ ଉତ୍ତର କହିଲା, 'ପୁରୁଷ ଲୋକଙ୍କୁ ଟିକେ ଡାକି ଦେବ କି ?'

'ମୁଁ ମାଲିକ ଏଠି, ମୋ ପୁରୁଷ ମୋର ନୌକର', ସ୍ତ୍ରୀ ଲୋକଟି ଯେ ଆଦୌ ମାଲିକାଣୀ ପରି ଦିଶୁନଥିଲା, କହିଲା, 'ଭାବନା ଯେ ମୁଁ ପଇସା ଅଭାବରେ ପଡ଼ିଛି, କି ଚଳିପାରୁନ ବୋଲି ତୋତେ ଘରଭଡ଼ା ଦେଉଛି । ତୋର ଘରଦୁଆର ନାହିଁ ବୋଲି ଦୟାକରି ତୋତେ ଦେଉଛି । ବୁଝିଥିବୁ ।'

ଘରେ ଗୋଟେ ବୋଲି କୋଠରୀ, କୋଠରୀ ଦାଣ୍ଡ ଯୋଡ଼ାଗଳି, ଘରର ଗୋଟିଏ କୋଣକୁ ଧର୍ମପଦ ଶୁଏ, ଆର କୋଣରେ ମାଲିକାଣୀ । ସନ୍ଧ୍ୟା ସମୟରେ ଧର୍ମପଦ ଘରକୁ ଫେରେନାହିଁ, କେଉଁଠି କାମ କଥା ବୁଝିବାକୁ ଚାଲିଯାଏ । ରାତିରେ ସେ ଫେରିଲା ବେଳକୁ ସ୍ତ୍ରୀ ଲୋକଟି ଶୋଇଯାଇଥାଏ, ନହେଲେ କୁଆଡ଼େ ଚାଲିଯାଇ-ଥାଏ । କେବେ କେବେ ଫେରିଆସି ସେ ଦେଖେ ରାତିରେ ତା' ବିଛଣାରେ କିଏ ଶୋଇଛି, ଧୂଳିମଳି କରିଛି । ଦିନେ ରାତିରେ ସେ ଦେଖିଲା ତା' ବିଛଣାରେ କିଏ ବାନ୍ତି କରିଦେଇଛି । ସେତେବେଳକୁ ସ୍ତ୍ରୀ ଲୋକଟି ନିଘୋଡ଼ ନିଦରେ ଶୋଇଥିଲା । ଧର୍ମପଦ ତାକୁ କିଛି କହିଲା ନାହିଁ । ରାତିରେ ବିଛଣା ଧୋଇ ଦୁଇକୋଣ ମଝିରେ ଟଙ୍ଗା ହୋଇଥିବା ଦଉଡ଼ି ଉପରେ ଶୁଖେଇଦେଲା । ବିଛଣାରୁ ପାଣି ପଡ଼ି ଘରର ମାଟି ଭୂଇଁ କାଦୁଅ ହୋଇଗଲା, ସକାଳୁ କୁଣ୍ଡରେ ମୁହଁ ଧୋଇବା ପାଇଁ ପାଣି ନଥିଲା, ମାଲିକାଣୀ ସକାଳୁ ଉଠି ପାଟିକଲା ଓ ଘରୁ ବାହାରିଯା ବୋଲି ଧମକେଇଲା । ଧର୍ମପଦ ବାନ୍ତିକଥା କହିବ ବୋଲି ଭାବିଲା, କହିଲା ନାହିଁ, ବିଛଣାରୁ ଏତେ ଉତ୍କଟ ଗନ୍ଧ ଛୁଟି ଆସିଲା ବୋଲି ପଚାରିବାର ସୁବିଧା ନଥିଲା, ମାଲିକାଣୀ ସେମିତି ପାଟି କରୁଥିଲା, ଧର୍ମପଦ ତା' ନିତ୍ୟମିତ ଚା' ଓ ପକୁଡ଼ି ଦୋକାନକୁ ନଯାଇ ସିଧା କାମକୁ ବାହାରିଗଲା । କାମରେ ବି ତାକୁ ଚିଡ଼ଚିଡ଼ ଲାଗିଲା, ମିଛକୁ ସେ ମିସ୍ତ୍ରୀ ଓ ଯୋଗାଳିଆ ସାଙ୍ଗେ କଳିକଲା ଓ ତା' ବଡ଼ି ଆଙ୍ଗୁଠି ହାତୁଡ଼ିରେ ଛେଚିଗଲା । ରାତିକୁ ସେ ଆଉ ଘରକୁ ଫେରିବ ନାହିଁ ବୋଲି ସ୍ଥିର କରି ଯେଉଁଠି କାମ କରୁଥିଲା ସେଠି ଯାଇ ପହଞ୍ଚି ଦେଖିଲା ଯେ ତାକୁ ସେଠି ଶୋଇବାକୁ ଜାଗା ନାହିଁ । ଏତେଦିନ ଏ ସହରରେ ରହିବା ସତ୍ତ୍ୱେ ଦରକାର ପଡ଼ିଲେ ଭଲରେ ମନ୍ଦରେ ରହିଯିବାକୁ ତା' ପାଇଁ ଜାଗାଟିଏ ନାହିଁ ଓ ଏ ସହରରେ ତା'ର ନିଜର କେହି ନାହିଁ, ଏ ସତ୍ୟ ସେ ଉପଲବ୍ଧି କଲା । ରାତିକୁ ସେଦିନ ସେ ଡେରିରେ ଫେରିବା ବେଳକୁ ମାଲିକାଣୀ ଶୋଇନଥିଲା; ଧର୍ମପଦର ବିଛଣା ସଫାହୋଇ ସଜ ହୋଇଥିଲା ଓ 'ଏତେ ରାତିଯାଏ କୁଆଡ଼େ ଯାଇଥିଲୁ' ବୋଲି କହି ମାଲିକାଣୀ ବଡ଼ବଡ଼ କଲା । ମାଲିକାଣୀ ସଜେଇ ହୋଇ ବସିଥିଲା, ଘରେ

ଅନ୍ତର ମହକୁଥିଲା ଓ ହବୁଅନ ଘରରେ ଘରେ ଯେଉଁ ଯୋଡ଼ା + ରେତଃ + ଗୋବର ଗନ୍ଧ ଥାଏ, ସେ ଗନ୍ଧ ନଥିଲା । ଧର୍ମପଦ ମାଲକାଣୀକୁ ଅନେଇଲା, କେତେ ବର୍ଷ ବଡ଼ ହବ ସେ ?

ରାତରେ ଧର୍ମପଦ ଶୋଇବାବେଳେ ସ୍ତ୍ରୀ ଲୋକଟି ତା' ପାଖକୁ ଆସିଲା, ପାଖରେ ବସିଲା, ତା' ମୁଣ୍ଡ ଆଉଁସି ଦେଲା ଓ ଶେଷକୁ ତା' ପାଖରେ ଶୋଇଗଲା । ସକାଳେ ଧର୍ମପଦ ତା'ର ଉଲଗ୍ନ ଦେହକୁ ଦେଖି ଗାଁର ଅସଂଖ୍ୟ ବୋହୂଙ୍କ କଥା ମନେପକେଇଲା ଓ ତା'ର ଭୟ କୁଆଡ଼େ ଗୁଲିଗଲା । ସେ ହାତକୁ ମାଥ ଦେଖାଇ କହିଲା, 'ଏଇ ଯା, ଗୁ'ନଡ଼ୁଆ ନେଇକି ଆ ।' ସ୍ତ୍ରୀ ଲୋକଟି ମୁହଁଧୋଇ ଗୁ'ନଡ଼ୁଆ ନେଇ ଆସିଲା, ପାଖରେ ବସିଲା ଓ କହିଲା, 'ତୁ ଯଦି କୁଆଡ଼େ ଆଉ ନଯାଉ, ତାହେଲେ ମୁଁ ବ କୁଆଡ଼େ ଯିବିନାହିଁ । କ'ଣ କହୁଚୁ ?'

ଧର୍ମପଦ ହଁ କରିଦେଲା ଓ ସେଇ ମୁହୂର୍ତ୍ତରେ କିଏ ଜଣେ କହିଲା, 'ଏ କ'ଣ କଲ ଧର୍ମପଦ ? ଏବେ ବ କହୁଚ ଫେରିଆସ । କୁହ, ଏ ଗଣିକାକୁ ଦେଖି କ'ଣ ତମେ ଗୋଟାଏ ବ ମୂର୍ତ୍ତି ଗଢ଼ିପାରିବ ?'

ଧର୍ମପଦ ତଥାପି ମୁଣ୍ଡ ହଲାଇଲା, ଜୋର୍‌ରେ ଜୋର୍‌ରେ, ସତେକି ସ୍ତ୍ରୀ ଲୋକଟି ଏକଥା ଶୁଣିନେବ ଓ ତା' ହାତ ଶୂନ୍ୟକୁ ଠେଲିଦେଲା, ସତେକି ସେ ଅଦୃଶ୍ୟ ବକ୍ତାକୁ ନିର୍ବାସିତ କରିଦେଲା । କେବଳ ତା'ର ଗାଁ କଥା ମନେପଡ଼ିଲା; କିନ୍ତୁ ଗାଁକୁ ଫେରିବାର ରାସ୍ତା ତା' ପାଇଁ ବନ୍ଦ ଥିଲା ।

## ଗୁରୁ

ଧର୍ମପଦର ବୁଦ୍ଧିଆଉ ବଢ଼ିଗଲା । ସେ ଅନେକ କଥା ବୁଝିଗଲା, ଯଥା : ମନ୍ତ୍ରିକାଠ ବଦଳରେ ପଲଖାକାଠ ଦଅ, ଚାଗୁଆନକାଠ ଦଅ କି ଡେଙ୍ଗୁଳିକାଠ ଦଅ, ଉପରେ ସନ୍ମାଇକା ଲଗେଇଦେଲେ କିଏ ଧରିବ ଲୋକେ । ଯଥା : ଯେଉଁମାନେ ଟିକୁଡରେ କାମକରନ୍ତି, ପିଠିରେ ବୋଝ ବୁହନ୍ତି, ମାଟି ହାଣନ୍ତି, ଇଟା ବୁହନ୍ତି, ସେମାନେ ଶ୍ରମିକ ବୋଲି ଗଣାଯାଆନ୍ତି ନାହିଁ କିମ୍ବା ଶ୍ରମିକ ଭାବରେ ସେମାନଙ୍କର କୌଣସି ଅଧିକାର ନଥାଏ । ଯେଉଁମାନେ କାରଖାନାରୁ ସିଧାସଳଖ ଦରମା ପାଆନ୍ତି, କାମ କରିବା ସମୟର ଶତକଡ଼ା ନବେଭାଗ ସମୟ ଗପସପରେ କଟେଇ ଦିଅନ୍ତି ସେମାନେ ଶ୍ରମିକ ରୂପେ ବିବେଚିତ ହୁଅନ୍ତି ଓ ସେମାନଙ୍କର ସବୁ ଅଧିକାର ଥାଏ । ଯଥା : ବଢ଼େଇ କାମ ଚଷା କାମପରି, ଚଷା ବର୍ଷାକୁ ଅନେଇବାପରି ବଢ଼େଇ ମିସ୍ତ୍ରୀକୁ ଅନେଇବ, କଣ୍ଟ୍ରାକ୍ଟରକୁ ଅନେଇବ, କଣ୍ଟ୍ରାକ୍ଟର କାରଖାନାକୁ ଅନେଇବ ।

ଯଥା : ଯେଉଁ ମାଲିକାଣୀ ହାତେ ସେ ରହୁଚି, ସେ ଗଣିକାଟିଏ । ଯଥା : ଯେଉଁ କଥା ସେ ମସ୍ତକରେ ବୁଝିପାରେ ନାହିଁ, ସେ କଥା ବୁଝିବା ପାଇଁ ଖୁବ୍‌ଗୁଡ଼ାଏ ଚେଷ୍ଟା କଲେ କୌଣସି ଲାଭ ହେବ ନାହିଁ ।

ଏବେବି ସେ ବହୁତ ପରିଶ୍ରମ କରୁଥିଲା, ସପ୍ତାହେ ଜାଗା ପାଇଁ ଓସ୍ତାଦ ପାଖକୁ ଦୌଡ଼ୁଥିଲା, ପଇସା ବ୍ୟାଙ୍କ୍‌ରେ ସଞ୍ଚୁଥିଲା ଓ ରାତିରେ ଥକାଯାଇ ଗଣିକାର ଝୋମ୍ପଡ଼ିରେ ଶୋଇଯାଉଥିଲା । ଘରକଥା ତା'ର ମନେପଡ଼ୁଥିଲା; କିନ୍ତୁ ଏଇମିତି ବଡ଼ଲୋକ ହୋଇ ସେ ଫେରିବ ନାହିଁ, ଫେରିବ ତ ଆଉ୍‌ରେ, ମିଳରେ ଥାଉ ଦେଖେଇବା ତା' ଦେହ ସୁନ୍ଦରତାହିଁ ସେଥିପାଇଁ ଏବେ ଯାଉନଥିଲା । ଅକସ୍ମାତ୍‌କ୍ରମେ ଗ୍ରହନକ୍ଷତ୍ରଙ୍କ ସଂଯୋଗ ବେଳେ, ମାଗଣାରେ ହଜେ ପଲଙ୍କ ଓ ଗୋଟେ ଡାଇନିଂଟେବ୍‌ଲ୍ ଓ ଗୋଟେ ଡ୍ରେସିଂଟେବୁଲ ଓ ଟେଲିଫୋନ୍ ରଖିବା ପାଇଁ ଦୁଇଟା ସନ୍‌ମାଇକା ଟପ୍ ଷ୍ଟୁଲ୍ କମ୍ପାନୀର ଦୁଇଜଣ କର୍ମକର୍ତ୍ତାଙ୍କୁ ଯୋଗେଇଦେଇ ଜଣେ ସାମାନ୍ୟ ବଢ଼େଇରୁ କମ୍ପାନୀର ପିଅନ ପଦକୁ ଉନ୍ନୀତ ହୋଇଗଲା ।

## ପାଞ୍ଚ

ଯେଉଁଦିନ ପିଅନ ଚାକିରି କରିବାପାଇଁ କାଗଜ ଧରି ଅଫିସ୍ ଭିତରକୁ ସେ ଯାଉଥିଲା, ତାକୁ ଦରୁଆନ୍ ଅଟକେଇଲା ଓ ପାସ୍ ମାଗିଲା । ଧର୍ମଦେର ପାସ୍ ନଥିଲା, ସେ ତା' ଚାକିରିର ନିଯୁକ୍ତିପତ୍ର ଦେଖାଇଲା । ଦରୁଆନ୍‌ଟା ଗଜମୂର୍ଖ ଥିଲା, ହେଲେ ବି ସତେକି ସବୁ ପଢ଼ି ବୁଝିଗଲା, ସେମିତି ଅଭିନୟ କରି ବ୍ୟାଟନ୍ ଦେଖେଇ ଭିତରକୁ ଛାଡ଼ିଦେଲା । ସେଇଠୁ ଭିତରକୁ ପଶି ମାର୍ବଲ୍‌ପାହାଚରେ ପାଦଥୋଇଲା ମାତ୍ରେ କିଏ କହିଲା, 'ଫେରିଆସ ଧର୍ମଦେ । ଅଉ ଆଗକୁ ଯାଅନାହିଁ । ଦେଖ ଏ ରାସ୍ତାରେ ଯେ ଥରେ ଯାଏ, ସେ ଆଉ ଫେରେନାହିଁ ।' କିଏ ଡାକୁଚି ବୋଲି ଧର୍ମଦେ ପଛକୁ ଅନେଇଲା, କାନ ଡେରିଲା, ହେଲେ ତା' ମୁଣ୍ଡ ଭିତରେ ହଜାରଟା ସ୍କୁଟର ମଟର-ସାଇକେଲ୍ ଷ୍ଟାର୍ଟ୍ ବନ୍ଦ ଷ୍ଟାର୍ଟ୍ ହେଲା ଓ ସ୍ୱରଟି ଅନ୍ତର୍ହିତ ହେଲା ।

ଜଏନିଂ ରିପୋର୍ଟ ଦେଇସାରି ଚାକିରିରେ ବାହାଲ ହୋଇ ସେଇଦିନ ହିଁ ଧର୍ମଦେ ତିନୋଟି ଭିନ୍ନଭିନ୍ନ ୟୁନିଅନ୍‌ରେ ଚାନ୍ଦାନେଇଟଙ୍କା ଦେଇ ସଭ୍ୟ ହେଲା, ଚତୁର୍ଥ ୟୁନିୟନର ଚାନ୍ଦା ଅଦାୟକାରୀ ଆସିଲାବେଳକୁ ତା' ପାଖେ ଆଉ ପଇସା ନଥିଲା, ତେଣୁ ସେ ବାକିଆରେ ସଭ୍ୟ ହେଲା । ବିଭିନ୍ନ ଜାଗାରେ ବସିଥିବା ପାଞ୍ଚଜଣ ପିଅନ ଯା'ଭିତରେ ତାଙ୍କ ସିଟ୍ ଛାଡ଼ି ନିଜନିଜ ବ୍ୟକ୍ତିଗତ ଧନ୍ଦାରେ ଚାଲିଗଲେ ଓ ତାଙ୍କ କାମ ଧର୍ମଦେ ଦାୟିତ୍ୱରେ ଦେଇଗଲେ । ପାଞ୍ଚଜଣଙ୍କ କାମସାରି ମଧ୍ୟ ଧର୍ମଦେ ସେଦିନ ଥକିଲା ନାହିଁ ଓ ସେଥିପାଇଁ ରାତିରେ ଶୋଇପାରିଲା ନାହିଁ । ଅଳ୍ପଦିନ ପରେ ତା'ଠୁ

ଜୁନିଅର ଆଉ ଜଣେ ପିଅନ୍ ମଧ୍ୟ କାମରେ ବାହାଲ ହେଲା ଓ ତା'ପରେ ଧର୍ମପଦର ଅଫିସ୍‌ରେ ଆଉ ବିଶେଷ କାମ ରହିଲା ନାହିଁ । ଦିନରେ ସେ ନିଜ ଦପ୍ତରର କାମରେ ବେଶି ମନଦେଲା, କ୍ରମେ ଧର୍ମପଦ ଗାଁରୁ ଆଉ ଜଣେ ପିଲା ପଳେଇଆସି ଅଫିସ୍‌ରେ ଧର୍ମପଦର କାମ କଲା ଓ ଧର୍ମପଦକୁ ନିଜ ଧନ୍ଦା ପାଇଁ ଅଜସ୍ର ସମୟ ମିଳିଲା । ଅଫିସ୍ ଚିହ୍ନାପରିଚୟ ହେତୁ ତାକୁ ନାନାଆଡୁ ଅର୍ଡର ମିଳିଲା, ଏଣିକି ସେ ଅର୍ଡର ଆଣିବା, ପଇସା ଆଣିବା, ଜିନିଷପତ୍ର ଯୋଗାଡ଼ କରିବାରେ ବ୍ୟସ୍ତ ରହିଲା ଓ ଆଉ ଦୁଇଜଣ ବାହାରିଙ୍କୁ କାମରେ ଲଗେଇଲା । ଗୃରେଷ୍ଟି ୟୁନିଅନ୍ ଭିତରୁ ଗୋଟିଏ ୟୁନିଅନ୍, ଯେଉଁଠି ତାକୁ ଗୋଟେ ଅତିରିକ୍ତ ମନୁକାମ୍ନା କାର୍ଯ୍ୟକାରୀ ସଭାପତି ପଦ ମିଳିଲା, ସେଥିରେ ସେ ରହି ବାକି ୟୁନିଅନ୍‌ରୁ ନିଜ ନାଁ କାଟିଦେଲା । ୟୁନିଅନ କାମରେ ଥିବାରୁ, ତାକୁ ଅଫିସ କାମରୁ ପ୍ରାୟପ୍ରାୟ ଅବ୍ୟାହତି ମିଳିଗଲା, ବ୍ୟାଙ୍କ୍‌ରେ ତା'ର ପଇସା ବଢ଼ିଲା ଓ ତା' ସାଙ୍ଗେ ବାହାଘର କରିବାପାଇଁ କେଇଜଣ ଲୋକ ତାକୁ ଗତାନୁଗତିକ ଆଳରେ ବାକି ଗୁ'କନକିଆ ଦେଇ ଆପ୍ୟାୟିତ କରୁ କରୁ ଜଣେକର ଝିଅ ସାଙ୍ଗେ ତା'ର ବାହାଘର ହେଇଗଲା । ବାହାଘର ବେଳେ କେହି ତା' ଗାଁରୁ ଆସିଲେ ନାହିଁ, କିନ୍ତୁ ହାତଗଣ୍ଠି ପଡ଼ିବାକୁ ଯାଉଛି, କିଏ କ'ଣ କହିଲା, 'ସେ କ'ଣ କଲୁ ଧର୍ମପଦ? ତମେ ସେ ଆଉ ଫେରିଆସି ପାରିବ ନାହିଁ ।'

ତା'ପରେ ବ୍ରାହ୍ମଣ ତାକୁ ଫୁଲ ଓ ଅକ୍ଷତ ସାଉଁଟିବାକୁ ଓ ଫୋପାଡ଼ିବାକୁ କହୁଥିଲେବେଳେ ତା' ମୁହଁରେ ଶହଶହ ସ୍କୁଟର ଓ ମୋଟରସାଇକେଲ ଷ୍ଟାର୍ଟ ହେଲା ଓ ତାକୁ ବ୍ୟସ୍ତକରି ଡାକପକାଉଥିବା ସ୍ୱର ଅନ୍ତର୍ହିତ ହେଲା ।

## ଛଅ

ପାଠକେ କ୍ଷମା କରିବେ, ଏପରି ବୋର୍ ଲେଖକର ବୋର୍ କଥା କହି ମୁଁ ଆପଣଙ୍କୁ ବୋର୍ କରୁଛି । ଆମ ଧର୍ମପଦ କୋଉ କୋଣାର୍କ ଗଢ଼ିପାରିଲା ନାହିଁ, ସେଥିପାଇଁ ପାଠକେ ଧର୍ମପଦକୁ ଓ ଅଧମକୁ କ୍ଷମା ଦେବେ । ଧର୍ମପଦର ସଂସାର ସ୍ୱୟଂସମ୍ପୂର୍ଣ୍ଣ ହେଲା ଓ ତା'ର ଦୁଇପୁଅ ଓ ଦୁଇଝିଅ ହେଲେ । ପିଲାଏ ପାଠ ପଢ଼ିଲେ, ଭଲ ସ୍କୁଲ, ଭଲ ଲୁଗାପଟା, ଭଲ ଟିଉସନ୍ ମାଷ୍ଟର ଲୋଡ଼ା ହେଲା । ପଢ଼ୁଛନ୍ତି ପିଲାଏ ଭିନ୍ନଭିନ୍ନ ଦୂରତ୍ୱରେ ଅଟକିଗଲେ, ପଟେଇବା ସହଜ ହେଲାନାହିଁ କି ପାଠ ଆଶାନୁରୂପ ହେଲାନାହିଁ । ପଡ଼ୋଶୀମାନଙ୍କ ସାଙ୍ଗେ ପ୍ରତିଯୋଗିତା କରି ଧର୍ମପଦ ଓ ତା' ସ୍ତ୍ରୀ ବିଭିନ୍ନ ଦରକାରୀ ଓ ଅଦରକାରୀ ଘରକରଣା ଜିନିଷ କିଣିଲେ । ତାକୁ ପ୍ରଥମେ ଦୂରରେ ଓ ପରେ ପାଖରେ କ୍ୱାର୍ଟର ମିଳିଲା । ତା' ବ୍ୟବସାୟ ବଢ଼ିଲା । ଏହା ଭିତରେ ତା' ବାପା ମରିଗଲା; କିନ୍ତୁ ବାପା ମରିଯିବ ବୋଲି ଆଗରୁ କେହି ଜଣାଣି କରି କହିଲା ନାହିଁ ଓ ବାପା ତ ମରି ସାରିଲାଣି ଏବେ ଯାଇ

କ'ଣ କରିବୁ ବୋଲି ସ୍ତ୍ରୀ ପତ୍ରାଶ ଦେବାରୁ ସେ କୌଣସି ଉତ୍ତର ଦେଇପାରିଲା ନାହିଁ । ତା'ଛଡ଼ା ଠିକ୍ ସେତିକିବେଳେ ତା' ଝିଅ କୁଆଡ଼େ ବାହାରେ ପଢ଼ିଯିବା ପାଇଁ ଯିବାର ଥିଲା ଓ ତା' ହାତରେ କେହି ନଥିଲେ ଓ ଶୁଦ୍ଧିକ୍ରିୟା ପାଇଁ ଟଙ୍କା ପଠେଇ ଦେଇ ଧର୍ମପଦ ତା' ବାପାକୁ ଭୁଲିଗଲା ।

ଏହାପରେ ଯେଉଁ ସଂସାର ସେ ଏକଦା କୈଶୋରରେ ଛାଡ଼ିଆସିଥିଲା, ସେ ସଂସାର ସହିତ ତା'ର ଶେଷ ସମ୍ପର୍କ ତୁଟିଗଲା । ତା' ବଡ଼ଭାଇ ବି ଅବୟସରେ ମରିଗଲା, ଗାଁରେ ରହୁଥିବା ତା'ର ଚିହ୍ନାଲୋକ ପ୍ରାୟ ସମସ୍ତେ ମରିଯାଇଥିଲେ । ଅନେକଦିନ ହେଲା ଏପରିକି ସେମାନଙ୍କ ମରିବା ଖବର ସୁଦ୍ଧା ଆଉ ଆସୁନଥିଲା । କେବେ କେବେ ଗାଁଆଡ଼ୁ ଟେପିସ ଯଣ କେହି କେହି ପିଲ ଚାକର ଅନ୍ୱେଷଣରେ ତା' ପାଖକୁ ଆସୁଥିଲେ । ଏମାନଙ୍କୁ ଧର୍ମପଦର ସ୍ତ୍ରୀ ସହିପାରୁନଥିଲା ଓ ଏମାନଙ୍କ ସାଙ୍ଗେ ଧର୍ମପଦ ଦୁଇପଦ କଥାବାର୍ତ୍ତା ହେଲେ ଘର ଭିତରେ ବାସନକୁସନ କଚଡ଼ା ହେଉଥିଲା ବା କାଚକାନଚ ଭାଙ୍ଗିଯାଉଥିଲା । ତେଣୁ ଧର୍ମପଦ ମଧ୍ୟ ଏମାନଙ୍କ ସହିତ କଥାବାର୍ତ୍ତା କରିବା ବନ୍ଦକରି ଦେଇଥିଲା ।

କ୍ରମେ ଧର୍ମପଦର ବୟସ ହୋଇଗଲା । ତା' ଝିଅ ବାହା ହୋଇଗଲା । ତା' ବଡ଼ପୁଅ ଦୋକାନରେ ବସିଲା, ନିଜେ ସ୍ୱେଚ୍ଛାରେ ରିଟାୟାର୍ ହୋଇ ଧର୍ମପଦ ସାନପୁଅକୁ ବଦଳରେ ମଜଦୁର କାମରେ ଭର୍ତ୍ତି କରିଦେଲା । ଧର୍ମପଦର ହାତଗୋଡ଼ କାଠ ହୋଇଗଲା । ସ୍ତ୍ରୀଙ୍କର ପାକସ୍ଥଳୀରେ ଅଲ୍‌ସର୍ ହେଲା, ଧର୍ମପଦ ସେ କମ୍ପାନୀ ସହରର ଅସଂଖ୍ୟ ଲୋକଙ୍କ ପରି ଆଉ ଏକ ମଧ୍ୟବିତ୍ତ ପରିବାର ହୋଇଗଲା । ଧର୍ମପଦର ମୁଣ୍ଡଭିତରେ ଏବେବି ଅହରହ ସ୍କୁଟର ମୋଟରସାଇକେଲ ଷ୍ଟାର୍ଟ ହେଉଥିଲା, ସେ ନୀରବ ହୋଇଯାଇଥିଲା ଓ ତାକୁ କମ୍ପା ତା' ମୃତ୍ୟୁ ପରେ ତା' ଉତ୍ତରପୁରୁଷଙ୍କୁ ଏହି ବାରମ୍ବାର ଅହେତୁକ ନିମନ୍ତ୍ରଣ କରୁଥିବା ଜିଦ୍‌ଖୋର, ଅକ୍ଷମ ପଶୁର କାନ୍ଦ ପରି ତହଲବିକଳ ସ୍ୱର ଆଉ ଶୁଭିଲା ନାହିଁ ।



# ସନାତନ ସବୁଦିନ କ୍ଲବ୍ ଯାଏ

ଗୋଟେ ଖୁବ୍ ବଡ଼ ଘର ଧଡ଼୍‌ଧାଡ଼୍ ଖଡ଼୍‌ଖାଡ଼୍ ହୋଇ ଭାଙ୍ଗୁଥିଲା । ଛାତରୁ ବଡ଼ ବଡ଼ କଡ଼ି, ବରଗା ଓ ଟାଇଲ୍ ଖସିପଡ଼ୁଥିଲା । କାନ୍ଥ ସବୁ ଦେଖୁଦେଖୁ ଫାଟି ଅଁ କରି କୌଣସି ଆଦରହୀନ ଲୋକର ଆଦରଚାହିଁ ଲୋଳରେ ଗଳି ପଡ଼ୁଥିଲା । ଗୃହଅଟ୍ଟ ଭାଙ୍ଗୁଥିବାର, ଗୁଣ୍ଡହୋଇ ଯାଉଥିବାର, ଧ୍ୱଂସ ହବାର ଛବି । କ୍ରମଶଃ ଭାଙ୍ଗିବା ସରିଗଲା କେବଳ ଶବ୍ଦଟିଏ ଭାଙ୍ଗିବାର ଗୃହଅଟ୍ଟ, ଯେମିତି ଭାଙ୍ଗିବାର ଗୃହଭୂମି ପାଇଁ କେବଳ ଶବ୍ଦଟି ଯଥେଷ୍ଟ । ଦୂରରୁ, ଖୁବ୍ ଦୂରରୁ ସ୍ତ୍ରୀ ଲୋକଟିଏର ବିକଳ କାନ୍ଦଣା ଶୁଭିଲା । ପ୍ରଥମେ ଏହା କୌଣସି ପକ୍ଷୀ ଅଥବା ସହନାଇର ସ୍ୱରପରି ଶୁଭୁଥିଲା; କିନ୍ତୁ ସ୍ୱର କ୍ରମଶଃ ନିକଟବର୍ତ୍ତୀ ହେଲା ଓ ଏହା ଗୋଟିଏ ସ୍ତ୍ରୀଲୋକର କାନ୍ଦଣା ପରି ଜଣାପଡ଼ୁଥିଲା । ସ୍ତ୍ରୀଲୋକଟି ଆଉ ଦିଶୁନାହିଁ; କିନ୍ତୁ ଗୃହଅଟ୍ଟ, କାନ୍ଦଣାର ଶବ୍ଦ, ଚତୁର୍ଦ୍ଦିଗେ, ଭଙ୍ଗାଘରର ଭିତରେ ଓ ବାହାରେ, ଶୂନ୍ୟରେ, ଭୂଇଁରେ, ପୃଥିବୀର ଗର୍ଭାଶୟରେ, ତକିଆ ଭିତରେ, ବହିଖାତାର ଥାକରେ, ଝଟତଳେ । ସନାତନର ନିଦ ହଠା ଭାଙ୍ଗିଆସିଲାବେଳେ ସେ ଜାଣିଲା କେବଳ କାନ୍ଦଣା ବାହାରୁ ଆସୁଚି, କେହି ଜଣେ ସ୍ତ୍ରୀଲୋକ, ବୋଧେ ମା' ଦାଣ୍ଡରେ କାନ୍ଦୁଚି ।

ସନାତନ ସବୁଦିନେ କ୍ଲବ୍ ଯାଏ ।

ସନାତନର ମା' କାନ୍ଦୁଥିଲା । 'ବୋଧେ ଟିକୁଲ୍ ମରିଯାଇଚି,' ସନାତନ ସ୍ଥିରକଲା । ଏପରି ଭାବିବାର କୌଣସି ଯୁକ୍ତିଯୁକ୍ତ କାରଣ ନଥିଲା; କିନ୍ତୁ ହଠାତ୍ ସେ ଭାବିଲା, ସେ କାଲି ରାତିରେ ସ୍ୱପ୍ନ ଦେଖିଥିଲା ଯେ ଟିକୁଲୁ ମରିଯାଇଚି ଓ ତା' ମା' ଦାଣ୍ଡରେ କାନ୍ଦୁଚି । ମୁଣ୍ଡଟେକି ସେ ଅନେଇଲା, ପାଖକୁ ପାଖ ଲଗି ଗୃହଶ୍ରେଣି ଖଟ ପଡ଼ିଚି, ସବାଶେଷ ଖଟରେ ଟିକୁଲୁ ଶୋଇଚି, ତା' ପାଟି ଗୃହପଟେ ଉନ୍ମୋଚନ ହେଲା ହୋଇଥିବା କଳାକଳା ଘା' ଉପରେ ମାଛିଟିଏ ବୁଲୁଚି । ସନାତନ ତଳକୁ ଆସିଲା । ଦାଣ୍ଡ ବାରଣ୍ଡାରେ ପାହାଚକୁ ଆଉଜି ମା' ବଡ଼ପାଟିରେ ରଡ଼ି

କରୁଥିଲି । ଏହା ସାଧାରଣ କାନ୍ଦ ନ ଥିଲା । ବହୁତ ଦୂରକୁ ଯେଉଁ କାନ୍ଦ ଶୁଭୁଚି କଷ୍ଟର୍ ଓ ଗ୍ଲିସେରିନ୍ ପରି ଯେଉଁ କାନ୍ଦ ବାରଣ୍ଡାରେ, କାନ୍ଥରେ, ଚୁଲିରେ, ଗୁହାଳରେ, ବେଲକଷ୍ଟେସନ୍‌ରେ ବହିଯାଉଚି । ପ୍ରଥମଥର ମା'ର ତଳଓଠ ତଳଅଡ଼କୁ ମୋଡ଼ିହୋଇ ଯାଇ ପାଟି ମେଲି ହୋଇଯାଉଚି ଓ ପାଟି ଭିତରୁ ଗୋଟେ ଗମ୍ଭୀର ସ୍ୱର ଥର ଥର ଗ୍ଲିସେରିନ ପରି ଝରିଯାଉଚି । ମା'ର ଆଖି ଲୁହରେ ଡବ ଡବ କରୁଚି । ଏହା ତତ୍‌କ୍ଷଣାତ୍ ସନାତନକୁ ସଂକ୍ରମିତ ହେଲା । ସେ ପାକସ୍ଥଳୀରୁ ମେଞ୍ଚାଏ ଗ୍ଲିସେରିନ୍ ଶୋଲା ପାଉଁଶ ପରି ବାହାରି ଆସୁଥିବାର ଅନୁଭବ କରୁଚି ଓ ତାଙ୍କଆଡ଼କୁ ଯାଉଚି । ଗଲାବେଳେ ଝୁଙ୍କୁଲୁ ମୁହଁରୁ ମାଛି ହଟେଇ ଦଉଚି । ବାଡ଼ପଟ ବାରଣ୍ଡାରେ ତା'ର ସାନଭାଇ ଓ ବଡ଼' ଭଉଣୀ ବିଭିନ୍ନ ଜାଗାରେ ଛିଡ଼ାହୋଇ କାନ୍ଦୁଥିଲେ । ସେବା ବଡ଼ଭାଇ ଓ ସାନମୋର ଭଉଣୀ ପାଟିକରି ରଡ଼ି କରୁଥିଲେ; କିନ୍ତୁ କୌଣସି ନିର୍ଦ୍ଦିଷ୍ଟ ବାହୁନା ବାହୁନୁ ନ ଥିଲେ । ଆଉ ଦୁଇଜଣ ଭାଇ ତଳକୁ ମୁହଁପୋତି ସକ ସକ ହୋଇ କାନ୍ଦୁଚନ୍ତି । ସେମାନଙ୍କ ପିଠି ଓ ବେକରେ ଏକ ଥରକା ପହଁରି ଯାଉଚି । ସନାତନ ସିଧା ଗୁହାଳ ପାଖକୁ ଗଲା ଓ ଖୁଣ୍ଟଧରି ଛିଡ଼ାହେଲା । ଝୁଙ୍କୁଲି ମରିଗଲା ନା ? କହିଲା ଓ ଜାଣିଲା ଯେ ସବୁଦିନ ଗଢପରି; ଆଗଦିନ ଗଢରେ ବି ସେ ବଇଣାରେ ମୂଢ ଦେଇଚି ।

ସନାତନ ସବୁଦିନ କ୍ଲବ୍ ଯାଏ ।

ସନାତନ ସବୁଦିନ କ୍ଲବ୍‌ରେ ମଦ ପିଏ ।

ବାପା କାନ୍ଦୁ ନ ଥିଲେ । ସେ ଆରାମଚେୟାରରେ ବସିଥିଲେ, ଗୋଡ଼ ହଲଉଥିଲେ ଓ ପ୍ରଥମଥର ପାଇଁ ଘର ଭିତରେ ସିଗାରେଟ୍ ଟାଣୁଥିଲେ । ବାପାଙ୍କ ମନରେ ବୋଧେ ଦୁଃଖ ନାହିଁ । ବାପାମାନଙ୍କ ମନରେ କ'ଣ ଦୁଃଖ ଥାଏ ? ସେମାନେ କ'ଣ ମା'ମାନଙ୍କ ପରି କାନ୍ଦନ୍ତି ? ସେମାନେ ବଡ଼ ନିଷ୍ଠୁର । ପାଖରେ ପଡ଼ୋଶୀ ବାବୁ ଓ ବାବୁଆଣୀ ବସିଚନ୍ତି । ବାବୁଜଣ ବାପାଙ୍କୁ ପଚାରୁଚନ୍ତି, 'କ'ଣ ହୋଇଥିଲା କି ପିଲାର ?'

'ବୋଧେ ଟାଇଫଏଡ୍ ହୋଇଥିଲା'—ବାପା କହୁଚନ୍ତି । ଆଉ କିଛି ଶୁଭୁ-ନାହିଁ । ବାପାଙ୍କ ସ୍ୱର ସ୍ଥିର, ତାଙ୍କ ମନରେ ଜମାରୁ ଦୁଃଖ ନାହିଁ ।

'ହଁ, ମୋ' ଆଖିର ଜପାମାଳି କମଳା ଖାଇବ ବୋଲି କହୁଥିଲା, ମୁଁ କାଲି ତାକୁ କମଳା ଟିକେ ଦେଇପାରିଲିନି ଲୋ', ମା'ର ବାହୁନା ସନାତନ ସ୍ପଷ୍ଟ ଶୁଣିପାରୁଚି । ବାବୁଆଣୀ ଉପରେ ସନାତନ ରାଗିଯାଇଚି । କାରଣ ବାବୁଆଣୀ କ'ଣ ଗୋଟେ ପଚାରିଲାବେଳେ ମା'ର କୋହ ଆସୁଚି ।

ସନାତନ ଏବେ ଭେ' ଭେ' ହୋଇ କାନ୍ଦୁଛି । ପ୍ରଥମରେ ତା' ମା'ର ଦେହ ନିର୍ଦ୍ଦିଷ୍ଟ କାନ୍ଦୁଥିବାର ମୁହଁ ତା'ର ମନେପଡ଼ୁଛି । ତା'ପରେ ସେ ଆଉ ଟୁକୁଲୁକୁ ଦେଖିବ ନାହିଁ । ଉନନ୍ଦନ ଆଗେ ଯେତେବେଳେ ତା' ମୁହଁରେ ଘା' ବାହାରିଲା, ସନାତନ ତା' ସ୍ୱାସ୍ଥ୍ୟରକ୍ଷା ବହି ଏମୁଣ୍ଡରୁ ସେମୁଣ୍ଡ ଓଲଟେଇଥିଲା ଓ ଟୁକୁଲୁକୁ ଟାଇଫଏଡ୍ ହୋଇଛି ବୋଲି ମା'ଙ୍କୁ କହିଥିଲା । ମା' ଏକଥା ବାପାଙ୍କୁ କହିଥିଲେ, ବାପା କିନ୍ତୁ ଶୁଣି ନ ଶୁଣିଲା ପରି ହୋଇଥିଲେ ଓ ତାକୁ ଡାକ୍ତରଖାନା ନେବାର କୌଣସି ଯୋଜନା କରି ନ ଥିଲେ । କାଲି ବାପା ଅଫିସରୁ ଫେରିବାବେଳେ ଟୁକୁଲୁ 'ମା'ଲୋ, ମୁଁ କମଳା ଖାଇବି' ବୋଲି ପାଟି କରୁଥିବାର ବାପା ଶୁଣିଥିଲେ; କିନ୍ତୁ କମଳା ଆଣି ନ ଥିଲେ । ଟୁକୁଲୁ କମଳା ଖାଇଥିଲେ ବୋଧେ ମରି ନ ଥା'ନ୍ତା, ମା' କହୁଛି ଓ ସନାତନ ବିଶ୍ୱାସ କରୁଛି ।

'ହୁଃ, କମଳା ଖାଇଥିଲେ କୁଆଡ଼େ ମରି ନ ଥା'ନ୍ତା ।' ବାପା କହୁଛନ୍ତି । ସନାତନର ସାନଭଉଣୀ, ଯାହା ହାତେ ଟୁକୁଲୁ ଗ୍ରାଇପର ଲାଗିଥାଏ, ସେ ଏପର୍ଯ୍ୟନ୍ତ କାନ୍ଦୁଛି ଓ 'ସନାତନରେ ଟୁକୁଲୁ ମରିଗଲା, ତାକୁ ବାପା କମଳା ଟିକେ ଦେଲେନି ରେ' ବୋଲି କହୁଛି । ସନାତନ ଆଉ କିଛି ଶୁଣିପାରୁନାହିଁ । ଗ୍ଲିସେରିନ୍ ପରି କାନରେ ସେ ବୁଡ଼ିଯାଉଛି ।

ସନାତନ ସବୁବେଳେ କ୍ଲବ୍ ଯାଏ ।
ସନାତନ ସବୁଦିନ କ୍ଲବ୍‌ରେ ମଦ ପିଏ ।
କ୍ଲବ୍‌ରେ ପହଞ୍ଚିବା ମାତ୍ରକେ କିଛିକ୍ଷଣ
ଅଦ୍ଭୁତ ସମ୍ପର୍କହୀନ ଲୋକଙ୍କୁ ଦେଖି ଦେଖି
ସେ ନିଜକୁ ଆଶ୍ଚର୍ଯ୍ୟ ହୋଇ ପଚାରେ,
ମୁଁ କ୍ଲବ୍ କାହିଁକି ଆସିଛି ?

ଦଶଟା ବାଜିଗଲାଣି । ଆଜି ଘରେ ରନ୍ଧା ହୋଇନି । ଆଜି ବୋଧେ ସ୍କୁଲ ବନ୍ଦ । ସ୍କୁଲକୁ ନ ଯିବା ଏହା ସନାତନର ପ୍ରଥମ, ଏ ବର୍ଷ ଭିତରେ । ମା'ର ଜୋର୍ କାନ୍ଦୁଣା ବନ୍ଦ ହୋଇଗଲାଣି । ସେ ଗୁପି ଗୁପି କହିଁ କହିଁ ହୋଇ କାନ୍ଦୁଛି । ସମସ୍ତେ ତଳକୁ ମୁହଁପୋତି ବସିଛନ୍ତି ଓ ଟୁକୁଲୁ ଉପରର ଭଉଣୀଟି ଗୋଡ଼ ନଖରେ ଭୂଇଁରେ ଗାର ଟାଣୁଛି । ସେ ବାପାଙ୍କ ପାଖରୁ ଗାଳି ଖାଇବ ବୋଲି ସନାତନ ଡରୁଛି; କିନ୍ତୁ ମନା କରି ପାରୁନି । ସନାତନ ଦାଣ୍ଡକୁ ଯାଉଛି ଓ ମା' ପାଖରେ ଯାଇ ବସୁଛି । ମା' ତା ଦେହରେ ହାତମାରି କହୁଛି, 'ଝିଅରେ

ବାପା, ତୋ ଦେହ କିଆଁ ଗରମ ଲାଗୁଚି ?' ପୁଣି ଥରେ ଭେ ଭେ କାନ୍ଦୁଚି, 'ଦେଖନ୍ତ, ଏଇ ଦେଖନ୍ତ, ସନାତନର ଦେହ କିଆଁ ଗରମ ଲାଗୁଚି !' ତା' ସ୍ୱର ତରଳି ଯାଉଚି, ବିକଳ ହେଇଯାଉଚି, 'ଏଇ ଦେଖ ଟିକେ ।' ସନାତନ ଆଖିରେ ପୁଣି ଲୁହ । 'ଓ ହୋ' କହି ବାପା ଉଠି ଆସୁଚନ୍ତି ଓ ସନାତନର ଦେହରେ ହାତ ମାରି କହୁଚନ୍ତି, 'ନା ତ ଜରଫର ନାହିଁ, ତମେ ମିଛକୁ ବ୍ୟସ୍ତ ହଉଚ ।' 'ବାପା କଷ୍ଟରେ ମୋ ଉପରେ ରାଗୁଚନ୍ତି', ସନାତନ ଭାବୁଚି । 'ଔଷଧ ଟିକେ ପାଇଁ ଟୁକୁଲୁ ମରିଗଲା ନା ନେ' ? ମା' କହୁଚି ।

'ହୁଁ, ଭାଗ୍ୟରେ ନଥିଲେ, ଔଷଧ କ'ଣ କରିବ ?' ବାପା କହୁଚନ୍ତି । ମା' ପୁଣି ଥରେ କାନ୍ଦିବାକୁ ଆରମ୍ଭ କରିଚି, ସନାତନ ଆଉ ମା' ପାଖରେ ବସି ପାରୁନାହିଁ, ନାଲି ରାସ୍ତାରେ ଚାଲି ଚାଲି ଯାଇ ଗୋଟେ ବଡ଼ି ଅଳି ଗଛ ଆରପଟ ପଥରରେ ବସିଚି । 'ଟୁକୁଲୁ ମରିଗଲା ନା ?' କହୁଚି ଓ କାନ୍ଦୁଚି ।

ମା' ବଡ଼ ଝିଅକୁ କହୁଚି, ଯା ଟିକେ ଚୁଲିଟା ଲଗାଇଲେ ମା', ତମେ ସବୁ କ'ଣ ଉପାସରେ ରହିବ ? ଚୁଲି ଲଗୁନି । ବଡ଼ ଝିଅଟା ଡେକ୍‌ଚି ଟେକି ପାରୁନି । ପାଣି ସବୁ ଚୁଲିରେ ପଶିଯାଉଚି । ଧକେଇ ଧକେଇ ଜଳୁଥିବା ନିଆଁ ଲିଭିଯାଉଚି । ଖୋଦ୍ ବାପା ବର୍ତ୍ତମାନ ରୋଷେଇ ଘରକୁ ଆସି ଏଦା ପାଉଁଶ ବାହାର କରୁଛନ୍ତି ।

ବାପା ଚାକରପିଲାକୁ କହୁଛନ୍ତି, ଟୁକୁଲୁକୁ ନେଇ ଗୋଟେ କନାରେ ଗୁଡ଼େଇ ଦେଇ ଜଙ୍ଗଲରେ ପକେଇ ଦେ । ବାପା ତା'କୁ ଗୋଟେ ପୁରୁଣା ବହଣା ଚାଦର ଦଉଚନ୍ତି । 'ନୂଆ ଚାଦରଟେ ଦିଅନ୍ତେନି'—ସନାତନ ଭାବୁଚି । ଚାକର ପିଲା ଟୁକୁଲୁକୁ ନେଇଯାଉଚି ଓ ମା' ତାକୁ ଦେଖି ଆଉଥରେ ବାହୁନିବାକୁ ଆରମ୍ଭ କଲା, ଯାହା ଅନେକ ସମୟ ପାଇଁ ବନ୍ଦ ହଉନାହିଁ । ସମସ୍ତେ ପୁଣି ଥରେ କାନ୍ଦୁଚନ୍ତି । ଏପରିକି ବାପା ରୋଷେଇଘରୁ ବାହାରି ଆସି ବାରଣ୍ଡାରେ ଛିଡ଼ାହୋଇ ପିଲାମାନଙ୍କୁ କହୁଚନ୍ତି, 'ଯାରେ ଯା, ଗାଧୁଆପାଧୁଆ କର ।'

'ଟୁକୁଲୁକୁ କୁଆଡ଼େ ନେଇଗଲେ ?' ଫୁସୁଫୁସୁ କରି ସବା ସାନଭଉଣୀଟି ସନାତନକୁ ପଚାରୁଚି ।

'ଫୋପାଡ଼ି...' ସନାତନ କହିବାକୁ ଆରମ୍ଭ କରୁଚି, କିନ୍ତୁ କହି ନ ପାରି କାନ୍ଦୁଚି । ସବା ସାନଭଉଣୀଟି ଏଥର ଖୁବ୍ ଜୋରରେ କାନ୍ଦୁଚି; କିନ୍ତୁ ଏ କାନ୍ଦ ସମ୍ପୂର୍ଣ୍ଣ ଅଲଗା ସ୍ୱରରେ ।

'ତୋ'ର କ'ଣ ହେଲା କରେ ?' ମା' ପଚାରୁଛି । ଚାକର ପିଲାଟି ଜଙ୍ଗଲ ଭିତରେ ଅଦୃଶ୍ୟ ହୋଇଯାଉଛି ।

ସନାତନ ସବୁଦିନ କ୍ଲବ୍‌ରେ ମଦ ପିଏ ।
କ୍ଲବ୍‌ରେ ପହଞ୍ଚିବା ମାତ୍ରେ କିଛିକ୍ଷଣ
ଅଦ୍ଭୁତ ସମ୍ପର୍କହୀନ ଲୋକଙ୍କୁ ଦେଖି ଦେଖି
ସେ ନିଜକୁ ଆଶ୍ଚର୍ଯ୍ୟ ହୋଇ ପଚାରେ
ମୁଁ କ୍ଲବ୍ କାହିଁକି ଆସିଛି ? କିନ୍ତୁ
ଦୁ' ଚାର ପେଗ୍ ପିଇଦେଲା ପରେ
ସେ ଏ ପ୍ରଶ୍ନଟି ଭୁଲିଯାଏ ଓ
କ୍ଲବ୍ ସାଙ୍ଗେ ସାମିଲ୍ ହୋଇଯାଏ ।

ଚାରିଟାବେଳେ ସ୍କୁଲରୁ ପିଲାମାନେ ଫେରୁଛନ୍ତି । ସମ୍ବିତ୍ ସାଙ୍ଗେ ସନାତନର ଦେଖାହେଉଛି । 'ଆଜି ତୋ ସାନଭାଇ ମରିଗଲାନା, ଖୁବ୍ ଦୁଃଖ ଲଗୁଥିବରେ ?' ସମ୍ବିତ୍ କହୁଛି; 'କିନ୍ତୁ, କିନ୍ତୁ ତୋ' ବାପାଙ୍କର ହୃଦୟ ନାହିଁ, ତାକୁ ଏମିତି ଜଙ୍ଗଲରେ ଫୋପାଡ଼ି ଦେଲେ ? ଆମ ଘର ଚାକରାଣୀ ଆଜି କହୁଥିଲା, ତାକୁ ଶିଆଳମାନେ ଖାଇଗଲେ, ଏବେ ତା' ଖପୁରି ପଡ଼ିଛି ସେଠି ।'

ଟୁକୁଲୁ କନକନ ହୋଇ କଥା କହୁଥିଲା । ସେ ସନାତନ ପାଖକୁ କେବେ ଆସୁ ନ ଥିଲା, ସେଥିପାଇଁ ସନାତନ ତାକୁ ମନେମନେ ଫୁଟାଣିଆ ଇତ୍ୟାଦି ଗାଳି ଦେଉଥିଲା । ଏବେ ସେଥିପାଇଁ ସେ ମନଦୁଃଖ କରୁଛି । ତା' ଛଡ଼ା ସେ କ'ଣ ସତରେ ଗାଳି ଦେଇଥିଲା ? ସନାତନକୁ ଦେଖି ମା' 'ମୋ ବାପାଟା କୁଆଡ଼େ ଗଲାରେ···' ବୋଲି କହୁଛି; କିନ୍ତୁ ବାକ୍ୟ ଶେଷ କରି ପାରୁନାହିଁ । ମା' ଚାକର ପିଲାକୁ ଡାକୁଛି, 'ତୁ ଟୁକୁଲୁକୁ ଆସ୍ତେ କିନା ଥୋଇଲୁ ନା ଫୋପାଡ଼ି ଦେଲୁରେ ?'

'ଆସ୍ତେ ଥୋଇଲି ମା' ! ଚାକର ପିଲା କହୁଛି ।

ରାତିରେ ସନାତନ ଘୋର ନିଦରେ ଶୋଇଛି; କିନ୍ତୁ ପରଦିନ ସକାଳୁ ଉଠିବାମାତ୍ରେ ଜାଣୁଛି ଯେ, ମା' କାଲି ରାତିଯାକ ଶୋଇନାହିଁ ଓ କାନ୍ଦିଛି । ମା'ର କେଶ ମୁକୁଳା । 'ସେ କ'ଣ ମୋ ମା ?' ସନାତନ ଭାବୁଛି ।

ବାପା ଓ ଚାକର ପିଲା ସେତେବେଳେ ଘରେ ରନ୍ଧାବଢ଼ା ଆରମ୍ଭ କରୁଛନ୍ତି । ମା' ଗୋଟି ଗୋଟି କରି ସବୁ ଭାଇଭଉଣୀଙ୍କୁ ନିଦରୁ ଉଠାଉଛି । 'ସ୍କୁଲ ଯିବ ବାପାମାନେ, ମା'ମାନେ, ଉଠରେ ! ସେ ଅଲକ୍ଷଣା ତ ଗଲା, ତମେ ସବୁ କ'ଣ ତା' ପାଇଁ ମୂର୍ଖ ହବ ?' ଯେକୌଣସି ଦିନ ପରି ଧାଡ଼ି ହୋଇ ଭାଇଭଉଣୀ ତରତର ହୋଇ ବସ୍ତାନପତ୍ର ଧରି ସ୍କୁଲ ବାହାରି ଯାଉଛନ୍ତି ।

କ'ଣ ହେଲା, 'ଆଜି କି ସ୍କୁଲ ?' ହେଡ୍‌ପଣ୍ଡିତ୍ ପଚାରୁଛି ବାଟରେ, 'ତୋ ବାପା ଯାହା କହ ଘର ନମ୍ବରରେ ।'

ସନାତନ ତଳକୁ ମୁହଁପୋତି ଚାଲିଯାଉଛି । ସ୍କୁଲରେ ତା' ଚାରିପଟେ ସବୁ ପିଲାମାନେ, ଏପରିକି ଝିଅପିଲାମାନେ ଘେରି ଯାଉଛନ୍ତି । କିଏ ଜଣେ ଟିକିନିଖି ମୃତ୍ୟୁର ସଠିକ୍ କାରଣ ଜାଣିବାକୁ ଚାହୁଁଛି । 'ହେ, ତାକୁ ଏତେ ପଚାରନା; ତା' ମନଦୁଃଖ ହେବନି ?' ଆଉ ଜଣେ କହୁଛି । ସନାତନ କାହିଁକି ଗୌରବ ଅନୁଭବ କରୁଛି ।

ଖେଳଛୁଟିରେ ସନାତନ ଘରକୁ ଫେରୁଛି, ଯଦିବା ସାଧାରଣତଃ ସେ ଆସେ ନାହିଁ ଖେଳଛୁଟିରେ । ମା' ବାପାଙ୍କ ଖଟରେ ବସିଛି, ଝରକା ବାହାରକୁ ଅନେଇଛି, ତା' ମୁହଁ ଲାଲ୍ ଦିଶୁଛି । ଖସି ପଡ଼ିଛି, ଖଟ ଉପରେ ବାପାଙ୍କ ଡାଏରୀ ଫିଟା । ସନାତନ ଡାଏରୀ ଓଲଟାଉଛି, କାଲି ତାରିଖରେ ଲେଖା ହୋଇଛି, "ଆଜି ଟୁକୁଲୁ ମରିଗଲା । ଏହା ମୋର ଜୀବନରେ ଏକ ଗଭୀର ଦୁଃଖର ଦିନ ହୋଇ ରହିବ ।" 'ବାପାଙ୍କ ଡାଏରୀ ପଢ଼ନା' ମା' କହୁଛି । 'ମା' ଲୋ...' କହି ସନାତନ ମା' କୋଳରେ ମୁହଁ ରଖି କାନ୍ଦିବାକୁ ଚାହୁଁଛି । ଖେଳଛୁଟି ସରିଯିବାର ଘଣ୍ଟି ସ୍କୁଲରୁ ଶୁଭୁଛି, 'ଯା, ଖେଳଛୁଟି ସରିଗଲାଣି, ଫେଲ୍ ପଡ଼ିଯିବ ପରା', ମା' କହୁଛି ।

ସନାତନ ଲୁହ ପୋଛି ସ୍କୁଲ୍ ଆଡ଼କୁ ଦୌଡ଼ୁଛି । ସେ ଚାଲିଗଲା ପରେ ମା' ଆଉଥରେ ଭେଁ' ଭେଁ' ରଡ଼ି କରୁଛି ।

ପୁନଶ୍ଚ ପରଦିନ ସନ୍ଧ୍ୟାରେ
ସନାତନ ଆଉଥରେ କ୍ଲବ୍ ଯାଏ !



# ପୁରୀ

ପୁଅଟି ମୋଟା ଚଷମା ପିନ୍ଧିଥିଲା ଓ ଲେକାଦୋଦା ଦର୍ଶିତ କବି ପରି ଦିଶୁଥିଲା । ସେ ମଝିରେ ମଝିରେ ଅନ୍ୟମନସ୍କ ହେଉଥିଲା, ଅବା ସ୍ତ୍ରୀ ପ୍ରତି ଧ୍ୟାନ ନ ଥାଇ ହସୁଥିଲା । ଝିଅଟି ସୁନ୍ଥାରେ ଲମ୍ବା ମୋଟା, କପାଳରେ ବୃହତ୍ ବୃତ୍ତାକାର ସିନ୍ଦୂର ଓ ହାତରେ ଦୁଇ ବାଇଶି ଚୂଡ଼ି ପିନ୍ଧିଥିଲା ଓ ବକର ବକର କରୁଥିଲା ।

ଦୁହେଁ ସମୁଦ୍ର କୂଳରେ ଅପେକ୍ଷାକୃତ ଅଳ୍ପଦାମର ହୋଟେଲକୁ ଗଲେ । ପୁଅଟି ନର୍ଭସ ନ ଦିଶିବାକୁ ଚେଷ୍ଟା କରି କରି ବେଶି ନର୍ଭସ ହେଲା । ଝିଅଟି ନର୍ଭସ ନ ହେବାକୁ ବେଶି ବେଶି ଚେଷ୍ଟା କରି କରି ବେଶି ବେଶି କଥା କହିବାକୁ ଯାଇ ଦେଖିଲା, ତା'ର କଥା ସରିଗଲା । ପୁଅଟି ଦୁଇଟି ଜଣିକିଆ ରୁମ୍ ମାଗିବାକୁ ଯାଇ ଗୋଟିଏ ଦୁଇଜଣିଆ ରୁମ୍ ମାଗିଲା । ରେଜିଷ୍ଟରରେ ଦସ୍ତଖତ କଲାବେଳେ ଗୋଟେ ଓଡ଼ଶ ରେଜିଷ୍ଟର ଉପରେ ଦଉଡ଼ି ଦଉଡ଼ି ଯାଉଥିଲା । ପୁଅଟି ନର୍ଭସ ହେଉନାହିଁ ବୋଲି ଦେଖାଇବାକୁ ଯାଇ କହିଲା, 'ଦେଖୁଛ ଏ ଓଡ଼ଶକୁ ? ଆମେ କୋଉ ରୁମ୍‌କୁ ଯାଉଛୁ, ଅହିକ ସେଠି ଦେଖିଗଲାଣି । ରକ୍ତ ଖାଇବ ବୋଲି ।' ଓ ମ୍ୟାନେଜରକୁ ପଚାରିଲା, 'ଆପଣଙ୍କର ବହୁତବେଳେ ରୁମ୍ ଖାଲିଥାଏ କି ?'

ରୁମ୍‌ରେ ପୁଅଟି ଜାଲ ଜାଲ କରି ଅନେଇଲା ତାକୁ ବେଲୁନରେ ବସି ଉଡ଼ିବା ପରି ଲାଗୁଥାଏ ।

ଝିଅଟି କୃତ୍ରିମ ରାଗରେ କହିଲା, "ଗୋଟେ ଦୁଇଜଣିଆ ରୁମ୍ କାହିଁକି ଆଣିଲ ?"

"ତମକୁ ଗେଲ କରିବି ବୋଲି" ପୁଅଟି କହିଲା ସିନା, ଉଠି ଠିଆ ହେଲା ନାହିଁ । ତା' ଗୋଡ଼ରେ ଭୂମିକମ୍ପ ଓ ପାଟିରେ ମରୁଭୂମି ।

ଝିଅଟି ଏ ଉତ୍ତେଜନା ଦେଖି ନ ଦେଖିଲା ପରି ହାତେ ଲମ୍ବା ଜିଭ କାଢ଼ିଲା, 'ଚୁଟ୍ ଚୁପ୍ ଦେଖୁଛ କେତେ ପତଳା କାନ୍ଥ, ତମ ଖରାପ ବ ଆର ପଟକୁ ଶୁଭିଯିବ,' କହିଲା ଓ ଗାଧୁଆ ଘରକୁ ଚାଲିଗଲା । ଅଇନାକୁ ଦେଖି ରଗଡ଼ି ସୁନ୍ଥାରୁ ଓ କପାଳରୁ ସିନ୍ଦୂର ପୋଛିଲା ଓ ପୁଣି ହସିଲା । ମନେ ମନେ କହିଲା, "ଆଜି ଶେଷଥର ପାଇଁ ସିନ୍ଦୂର ଲିଭାଉଛି । ଆଉ ଦିନେ ଲିଭାଇବି ନାହିଁ । ଆଇବନ ।"

ଝିଅଟି ମୁଣ୍ଡ କୁଣ୍ଡାଇଲା ଓ ତା' ପରେ ପୁଅକୁ "ଖବରଦାର ମୋତେ ଛୁଇଁବ ନାହିଁ" ବୋଲି ତାଗିଦା ଦେଇ ପୁଅର ମୁଣ୍ଡ କୁଣ୍ଡେଇଦେଲା ବେଳେ ପୁଅଟି ତାକୁ ବାହୁରେ ଅଭୋରିନେଲା ।

"ଦେଖ, ମୋ ଶାଢ଼ୀ କୁଞ୍ଚା ହୋଇଗଲା ।"

ପୁଅଟି କାନ୍ଦିବା କାନ୍ଦିବା ହେଲା । "ଶାଢ଼ୀ କୁଞ୍ଚା ହୋଇଯିବ ବୋଲି ମୋତେ ଗେଲ ଟିକେ ମନା କରିଦେଲ ?"

ଝିଅଟି ଏଥର ପୁଅକୁ ବୋଧକଲା । ପୁଅଟି ହସିଦେଲା । ବାଲ୍‌କୋନିରେ ଦୁହେଁ ଠିଆହେଲେ । ପବନ ଚହଲା ପରିଚିତ ପରି ଘର ଭିତରକୁ ପଶିଆସି ନାଚିଲା ।

—ସମୁଦ୍ର ପବନର ପରି ଲାଗେ ମୋତେ ।

—ଯାଃ ଆଜି ପରା ଉପାସ କରିବା କଥା ?

ଏତିକି କହି ଝିଅଟି ଉଦାସ ହେଲା । ଉପାସ କରିବା କଥା ତ ! ପୁଣି କଳସୀ କାନ୍ଧେ ପାଣିରେ ଆଗନ୍ଧନ ଗାଧୋଇବା କଥା ତ । କେହି ତାକୁ ବେଶଭୂଷା କରିଦେବା କଥା ତ ! କେହି କନ୍ୟାଦାନ ବି କରିବା କଥା । ଝିଅଟି ଔଦାସ୍ୟକୁ ହତାଦର କରି ତଡ଼ିଦେଲା । ଜରଦ୍‌ଗବ ପରି ଧୂର୍ତ୍ତ ଦିଶୁଥିବା କଦଳୀ ଦୋକାନୀ କଦଳୀ ଗୋଟା ଅଠେଇ ଟଙ୍କା କହିଲା । ଝିଅର ଖୁସି ପ୍ରଥମ ଥର ପାଇଁ କିଏ ଗୋବର ଜଳାରେ ଦଡେ କି ପୋଛିଦେଲା । ଛିଃ । ବୈରଟାଏ । ବିଦେଶୀମାନଙ୍କୁ ଠକଉଛି ।

ଶିପ ଢଆଣ ହରଣ ହରଣୀ ବିକୁଥିଲା ପିଲାଟିଏ । ପୁଅଟି ଓ ଝିଅଟି ମୁଗ୍ଧ ହୋଇ ରହିଲେ । କି ସୁନ୍ଦର ଦିଶେ ଆହା !

ବିକାଳିଟି ବିଦେଶୀ ଭାଷାରେ ପଚାରିଲା, ନେବେ ?

ପୁଅଟି ଅସ୍ତବ୍ୟସ୍ତ ହେଲା । 'ମୁଁ ବିଦେଶୀ ନୁହେଁ !' ସେ କହିଲା ଓ ଝିଅର ହାତଧରି ଦ'ପାହୁଣ୍ଡ ଅଗେଇଗଲା । ଦ'ପାହୁଣ୍ଡ ପରେ ପୁଣି ଫେରିପଡ଼ି କହିଲା, "ମୁଁ ବିଦେଶୀ ନୁହେଁ । ମୁଁ ମାଟି ଖୋଜୁଛି ମାଟି । ମୋତେ ମାଟି କାହିଁକି ମନାକରି ଦେଉଛ ?"

ଏପରି କି ମିଠେଇ ଦୋକାନୀ ବିଦେଶୀଭାଷାରେ କହିଲା, "ଯଦି ଭିତରକୁ ଆସିବ, ତଳେ ବସିବ, ପ୍ଲେଟ ଧୋଇବ । ଯଦି ବାହାରେ ଠିଆହୋଇ ଖାଇବ, ନର୍ଦ୍ଦମାରେ ପତର ନେଇ ପକେଇବ ।"

ଠିଅଛେବା, ବସିବାରେ କଚ୍ଛନାହିଁ । ପ୍ଲେଟ ଧୋଇବା, ପତର ଫୋପାଡ଼ିବାରେ କଚ୍ଛ ନାହିଁ । କିନ୍ତୁ ଅସ୍ପୃଶ୍ୟତା କେଉଁ ଝିଭେ ବଅନ୍ତା ନାହିଁ ? କାହିଁକି ମୋତେ ପରକର ଦେଉଚ ? ବିଦେଶୀ କରଦେଉଚ ?

ଜଣେ ପଣ୍ଡା ଗୋଟିଏ ବିଦେଶୀ ଭାଷାରେ ପଚାରିଲା, "ମନ୍ଦିର ଗୃଳ ।"

"ଆମେ ବିଦେଶୀ ହେବୁ ନାହିଁ, ମୋତେ ଝିଲେ ଅଶ୍ରଦ୍ଧ ହଅ, ଅସ୍ପୃଶ୍ୟତା ହଅ"; ପୁଅଟି କହିଲା, "ତମ ପାଖେ ସେ ଦରୁ ନାହିଁ ତେଣୁ ଆମେ ମନ୍ଦିର ଯିବୁନାହିଁ ।"

ମଣା ମର ଧର୍ମଯାଜକ !

ଅପଣ କ'ଣ ମାଳବରୁ ? ମାରଓ୍ୱାରରୁ ? ଗୃଷୀକୁଳରୁ ? ବ୍ରାହ୍ମଣ କୁଳରୁ ? ତୁମେ କ'ଣ ଅଣ୍ଡାମାନ-ନିକୋବର ଦ୍ୱୀପପୁଞ୍ଜରୁ ?

ଅମେ ମଣିଷ : ପୁଅଟି ପାଟିକର କହିଲା ।

ଅମେ ମଣିଷ : ଝିଅଟି ଆଉର ଜୋର୍‌ରେ ପାଟିକର କହିଲା ।

ଏଠି ମଣିଷ ଯଥେଷ୍ଟ ପରିଚୟ ନୁହେଁ । ଧର୍ମଯାଜକମାନଙ୍କର ଏ ରାଜପଥରେ । ମଣିଷମାନଙ୍କୁ ଏଠି କାଟିକୁଟି ଶ୍ରେଣୀଭୁକ୍ତ କରିବାକୁ ପଡ଼େ, ବିଭିନ୍ନ ଖୋପରେ ରଖିବାକୁ ପଡ଼େ, ଗୋଷ୍ଠୀରେ ବିଭକ୍ତ କରାଯାଏ, ଯଦ୍ଦ୍ୱାରା ସେମାନଙ୍କୁ ହେଲିବାର ଛଳନା କରାଯାଇପାରେ ।

ଏଠି କେହି ମଣିଷ ନାହିଁ । ଏଠି ଖାଲି ବ୍ରାହ୍ମଣ ଓ କରଣ, ବଂଗାଳୀ ଓ ବିହାରୀ, ତେଲୁଗୁ ଓ ତାମିଲ, ମରାଠୀ ଓ ମାରୁଆଡ଼ି । କାପୁ ଓ କାଶ୍ମିରୀ ।

ଝିଅଟି ଏତେ ଲୋକଗହଳିରେ, ପୁଅଟିର ଉଦାସ ହତୋତ୍ସାହ ମୁହଁ ଦେଖି ଦେଖି କଳି କରିବ କରିବ ହେଉଛି ।

—କାହିଁକି ଆମକୁ ବ୍ୟସ୍ତ କରୁଚ ଭାଇ ହେ ! ମଣିଷ ଜାତିରୁ ବାହାରକରି ଦେଉଚ ?

—ମଣିଷ ଆମେ, ମଣିଷର ଅଧିକାର ଛଡ଼େଇ ନେଉଚ ହୋ ଭାଇମାନେ ?

—ଆରେ ଏ ଟୋକାଟୋକୀ କ'ଣ ବକୁଚନ୍ତି । ସ୍ୱାଂକୁ ଭୂତ ଲାଗିଚ ! ହୁଇଓ ଯାତ୍ରୀମାନେ କୋଉଠୁ ଆସିଲେ ଆମେ ବୁଝିବୁ ନାହିଁ କି ? ଗୁଡ଼ ହେ କଥା ! ପିଲାଲୋକ ତମେ, ସେଥିପାଇଁ ଜାଣ ନାହିଁ । ଶୁଣ, ଏଇଠି କୋଡ଼ା ରଖ । ଏଇଠି

ଏଇଠି । ଆରେ ଜୋତା ରହିବ ନାହିଁ ? ତ ଯାଉ ଗାଡ଼ିଅଡ୍ଡା ରହୁ । ତା'ହେଲେ ଭଲ । ପଇସା ପଡ଼ିବ ନାହିଁ । ଅବଶ୍ୟ ପଇସା ବେଶି ନୁହେଁ, ଧଳା ଆଠଅଣା । ଛତା ବି ଆଠଅଣା । ତମ ଘଣ୍ଟାରେ ସେ କ'ଣ ଫିତା ? ଚମଡ଼ା ନୁହେଁ ତ ? ରେକ୍ସିନ । ଭଲ, ଭଲ । ଏଇଠି ଭଲ ଭୋଗ ମିଳେ । ନେଇ ଯାଅ । ଫେଣୀ ତଟକା ଅଛି । ଗଜା ବି । କ'ଣ କହିଲ ମନ୍ଦିରକୁ ଯିବ ନାହିଁ ? କି ଧର୍ମୀ ଓ ତମେ ? ଏଇଠି ଏତେ ଏତେ ପାହୁଣ୍ଡ ପକେଇ ଚାଲିଯାଉଚ ଜଗନ୍ନାଥଙ୍କ ଆଗରେ ? ମନ୍ଦିର ଭିତରକୁ ଯିବ ନାହିଁ ?

ଜଗନ୍ନାଥ ଦତେଳ ଡାକୁଚନ୍ତି । ପିଲାଏ ଆସ । ମୋ ଆଗକୁ । ମୁଁ ପରା ତମକୁ ଅନେଇ ବସିଚି !

ଧର୍ମଯାଜକର ପ୍ରଲାପ ଅନବରତ : କ'ଣ କହିଲ ? ମନ୍ଦିର ଯିବ ନାହିଁ ? କାହିଁକି ଯିବ ନାହିଁ ? ହେଲେ, ମୋତେ କାହିଁକି ନମସ୍କାର କରୁଚ ? ବୁଡ଼ିଲ ନର୍କରେ ପଡ଼ିଲେ ମୁଁ ରକ୍ଷାକରି ପାରିବି ନାହିଁ । ଠାକୁରଙ୍କୁ ନମସ୍କାର କର ।

ହିପିଅଟି ଏଥର ବଡ଼ଦାଣ୍ଡରେ ନଟରାଜ ନୃତ୍ୟ ଆରମ୍ଭ କଲା । ମୁଁ ମଣିଷ । ମୁଁ ମଣିଷ । ମୋତେ ଚାପିଦିଅ ନାହିଁ । ମଣିଷ ଉପଯୋଗୀ ସ୍ୱାଧୀନତା ହିଁ ମାଗୁଛି । କାହାର ଦୟା ତ ମାଗୁନାହିଁ ! ଅବା ଅନୁକମ୍ପା ! ହକ ଅଧିକାର ମାଗୁଛି ।

ବଡ଼ଦାଣ୍ଡରେ ଘୋ ଘା । ଲୋକ ଘେରିଯାଉଛନ୍ତି । ଜଣେ ଦି'ଜଣ ଧର୍ମପରାୟଣ ବୃଢ-ବୃଢୀ । ମୁଣ୍ଡ ଖାଙ୍ଗୁଛନ୍ତି ଓ ହିପିଅଟିକୁ ଜୁହାର ହେଉଛନ୍ତି । ଜଣେ ଧର୍ମଯାଜକଙ୍କ ଗୋଡ଼ ଆଙ୍କ ପରି ହସୁଚି । ଆଉ ଜଣେ ଗୋଟେ ବୁଲାଷଣ୍ଢ ତଡ଼ି ତଡ଼ି ଭର୍ତ୍ତି କରଉଛି ଗହଳି ଭିତରେ ।

ଛଟଳଚାନିଆ ହୋଇ ଚିତ୍କାର ମାରୁଥିବା ଲୋକେ ଛୁଟୁଛନ୍ତି । ଅଥଚ ନିର୍ଭୟ ହୋଇ ପୁଅଟି ଓ ହିପିଅଟି ବଡ଼ଦାଣ୍ଡରେ । ନଟରାଜ ମୁଦ୍ରାରେ । ଷଣ୍ଢଟି ଦେଖି କି ଡରିଗଲା ଯେମିତି ମୁଣ୍ଡନଇଁ ନିରୀହ ଶିଶୁପରି ହାଟଘାଟ ଚାଲିଗଲା ।

ଗୋଟେ ଠୋକାଲିଆ ସୌମ୍ୟଦର୍ଶନ ପଣ୍ଡିତ ଜଣେ ଅସ୍ଥିକଙ୍କାଳସାର ବୁଢ଼ୀଯାତ୍ରୀକୁ ଚିତ୍କାର ମାରୁଚି । ବୁଢ଼ୀଟି ମୁଣ୍ଡପାତି ନୀରିହ ଭାବେ ଚାଲିଯାଉଛି ଓ ଭାବୁଛି, 'ସବୁବେଳେ ଭଗବାନଙ୍କ ପାଖେ ପହଞ୍ଚିବାର ରାସ୍ତା କଣ୍ଟକିତ ! ଧର୍ମଯାଜକମାନେ ଗୋଟେ ଗୋଟେ କଣ୍ଟା ।'

ତେଣୁ ସେ ନିର୍ଲିପ୍ତ ହସ ହସୁଚି । କିନ୍ତୁ କି ବାହାଦୁରିଆ ହସ ହସୁଚି ସେ ଧର୍ମଯାଜକ, ପଚିଶ ଶହେ ଗଡ଼ ଜିଣିଲା ପରି !

ଆଉ ଜଣେ ଧର୍ମଯାଜକ ଜଣେ ଅନ୍ୟମନସ୍କ ତୀର୍ଥଯାତ୍ରୀର ଗାଣ୍ଠିଆ ଓ କଣ୍ଠା ଟାଣି କହୁଛ, "ତେତିଶ କୋଟି ଦେବତା ଦେଖାଇଲି, ତୁ ଗାଣ୍ଠିଆ ନେଇକି କ'ଣ ତେତିଶ କୋଟି ଏକ ଦେବତା ପାଖେ ଥୋଇବୁ ?"

ଅନ୍ୟମନସ୍କ ତୀର୍ଥଯାତ୍ରୀର ବହୁଳ ଭାବ କଟିଯାଉଛି । କେହି ଜଣେ ଧର୍ମଯାଜକ ଅଶ୍ଳୀଳ ଗାଳିଗୁଲଜ କରି କରି ମନ୍ଦିରରୁ ବାହାରୁଛ ।

—ଆମକୁ କ୍ଷମା କରିଦିଅ ଠାକୁର ! ଏ ସବୁ ଆତୁର ପାଇଁ କ'ଣ ଆମେ ଆସିଥିଲୁ ? ତେବେ କେଉଁ ଆତୁର ବଳୁଛରେ ଆମେ ବିଦ୍ରୋହ କଲେ ଓ ପ୍ରତିବଦଳରେ କ'ଣ ପାଇଲେ ?

—ଆମେ ମନ୍ଦିର ଭିତରକୁ ଯିବା ନାହିଁ ।

ପୁଅଝିଅ ଦୁହେଁ ସମୁଦ୍ରକୂଳରେ ପହଞ୍ଚିଲେ । ଫୁଲାଣିଆ ଟ୍ୟୁରିଷ୍ଟମାନଙ୍କର ହଇଚଇ । ଖରାକୁ ବି ଦେଖ କେମିତି ଟ୍ୟୁରିଷ୍ଟଙ୍କ ପରି ଫୁଲେଇ ହଉଛି । ଶାମୁକା ବାଲି ଘ'ପଇସା ଲାଭ କରିବାକୁ ବାଳକ ଅଣ୍ଟିଛି ନାବାଳକ । ଆଣ୍ଠୁଏ ପାଣିରେ ଠିଆହୋଇ ଦୁଇଟା ମଡ଼ଙ୍ଗା ମାଛକନାଙ୍କ ଆଗରେ ପୌରୁଷର ବାହାଦୁରି ନେଉଥିବା ଚଢ଼ିପିଲା ପ୍ରୌଢ଼ । ବାଦାମ ଭେଣ୍ଡା । ବୁଲୁଥିବା ନୋଳିଆ ।

ଅଥଚ କି ଅନବଦ୍ୟ ଏ ଗାମ୍ଭୀର୍ଯ୍ୟ ! ଏତେସବୁ ଫେରିକାମି ସତ୍ତ୍ୱେ ।

ପୁଅଟି ତା' ସ୍କଲାରସିପ୍ ଟଙ୍କାସବୁ ନେଇଆସିଛ । ସବୁ ଟଙ୍କା ଖର୍ଚ୍ଚ ହୋଇଗଲେ, ସେ ଆଉ ଫର୍ମ ପୂରଣ କରିପାରିବ ନାହିଁ । ପରୀକ୍ଷା ଦେଇପାରିବ ନାହିଁ ।

ଝିଅଟି ମାସ ମାସ ଲାଗି କିଛି ପଇସା ସଞ୍ଚି ଗୋଟିମିଲ ବନ୍ଦ କରି । ଶାଢ଼ୀ, ସିନେମା, ଶଙ୍କୁଡ଼ା, ଚାଇଁ ସବୁ ତ୍ୟାଜ୍ୟ କରି । ତା' ହେଲେ ଏଇଠିକି ଆସିବ ।

କାରଣ ଝିଅର ବାପା-ମା' ଏ ବାହାଘରରେ ରାଜି ନୁହନ୍ତି । ପୁଅର କ୍ଲାସ୍ ନାହିଁ । ତା'ର ଭବିଷ୍ୟତ ଅନିଶ୍ଚିତ ।

ପୁଅର ବାପା-ମା' ଏ ବାହାଘରରେ ରାଜି ନୁହନ୍ତି । ଝିଅର ଜାତି ସାନ । ପୁଅର ବୟସ ହୋଇନାହିଁ ।

ମନ୍ଦିର ଶେଷ ଆଶା ଥିଲା । କେମିତି ହେଉ ଏ ସ୍ଥାନ ସେ ତାକୁ ଉଦ୍ଧାର କରିଦେବ, ସେ ଅଟଳ ବିଶ୍ୱାସ ତାକୁ ଚଳେଇ ଆଣୁଥିଲା । ଆଜି କିନ୍ତୁ ସବୁ ଭାଙ୍ଗିଗଲା ।

ଲୁହଭର୍ତ୍ତି ଆଖିରେ ପୁଅଟି ପଚାରିଲା— କ'ଣ କରିବା ?

ଲୁହଭର୍ତ୍ତି ଆଖିରେ ଝିଅଟି ଠିକ୍ ସେମିତି ପଚାରିଲା —କ'ଣ କରିବା ?

ପୁଅଟି ଝିଅର ହାତ ଧରିଲା ଓ ତା' ମୁହଁକୁ କୌଣସି ଜଟିଳ ପାଠ୍ୟପୁସ୍ତକ ଦେଖୁଥିବା ପରି ନିରେଖିଲା । ପୁଣି ସେ ତା' ହାତ ଛାଡ଼ିଦେଲା ଓ 'ଏଇ ଆସୁଚି', କହି କୁଆଡ଼େ ଅନ୍ତର୍ଦ୍ଧାନ ହେଲା ।

ଝିଅଟି ରାଗିଲା । ରାଗିରାଗି ହାତ୍‌ରେ ଅଙ୍ଗୁଳି ଅଙ୍ଗୁଳି ଗାଡ କରି ପକେଇଲା ।

ପୁଅଟି ଫେରିଲା, ଲାଜ ଲାଜ ହସରେ । ଝଟ୍‌ରେ ତା' ହସ ଝରଣାରୁ କି ବେଶୀ ଉଜ୍ଜ୍ୱଳ ଦିଶିଲା ।

ଝିଅର ରାଗ ପାଣିଚୋର ହେଲା; କିନ୍ତୁ ସେ ମୁହଁ ଫୁଲେଇ ବସିରହିଲା ।

—ଆଖି ବନ୍ଦ କର । ପୁଅଟି କହିଲା ।

—ମୁଁ କରିବ ନାହିଁ ।

—କର ନା । ଟିକେ ଖାଲି ।

ଝିଅଟି ଆଖି ବନ୍ଦକଲା । ପୁଅଟି ପକେଟରୁ ସିନ୍ଦୂର କାଢ଼ି ତା' ସୀମନ୍ତରେ ଲଗାଇଲା । ଶଙ୍ଖା ପିନ୍ଧାଇଲା ।

ଝିଅଟିକୁ ହମ୍ପ୍ଟି ଡମ୍ପ୍ଟି ଅନୁଗତ ଅନୁଗତ ଲାଗିଲା । ପୁଅଟିକୁ ଅନ୍ତର୍ଗତ ହୋଇଯାଉଥିବା ପରି ଲାଗିଲା । ସ୍ୱେଚ୍ଛାଗ୍ରସ୍ତ ପିତାମାତା, ଅନିଶ୍ଚିତ ଭବିଷ୍ୟତ, ନିଶ୍ଚିତ ଅତୀତ, ସେମାନଙ୍କ ଶୈଶବ କେହି ତାଙ୍କୁ ରୋକିଲେ ନାହିଁ ।

ପୁଅଟିର ଦାର୍ଶନିକ ପରି ଆଖି ଧାଉଁ ଧାଉଁ କରେ । ତା'ର କଇଁଫୁଲ ପରି ତୋଫା କପାଳ । ଯାଙ୍କୀ ମାଗୁଥିବା ପରି ନିସ୍ପୃହତା ।

'ଦେଖ ମୋତେ ଯଦି ଚୁମା ଦବ ତ ମୁଁ ପାଟିକରିବି', ଝିଅଟି କହିଲା ।

'ପାଟି କର । କ'ଣ ହବ । ମୁଁ ସମସ୍ତଙ୍କୁ କହିବି ତମେ ମୋର ସ୍ତ୍ରୀ ।'

'ତା'ହେଲେ ଅପେକ୍ଷା କରିଚ କ'ଣ ପାଇଁ ?' ଝିଅଟି କହିଲା । ପୁଅଟି ଝିଅକୁ ଚୁମା ଦେଲା ।



# ପୃଷ୍ଠବନ୍ଧ

ଏତେ ସବୁ ଆଲୁଅ, କୋଳାହଳ, ଘଟଣା, ଦୁର୍ଘଟଣା, ଡରେଇ ଦେଇ ପାରୁଥିବା ବଜେଟକାମ୍ବ କୋଠାଘର ଓ ଅନୁଷ୍ଠାନ ପୁନଶ୍ଚ ଏତେ ଅପରିଚିତ ? ଏସବୁ କେମିତି ସମ୍ଭବ ? ମୁଁ କେତେଦିନ ହେଲା ତ ଚାଲିଯାଇ ନଥିଲି, ଗଲାଥର ରହିବାଠାରୁ ମୋଟେ ପାଞ୍ଚବର୍ଷ, ଏ ପାଞ୍ଚବର୍ଷରେ ମୁଁ ପଚାଶଥର ତ ଭୁବନେଶ୍ୱର ଆସିଥିବି, ପଚାଶଟା ଭୁବନେଶ୍ୱରକୁ ତ ଜାଣିଥିବି ! ପ୍ରଥମେ ଯେତେବେଳେ କର୍ଣ୍ଣଲ୍ ଆ ଷ୍ଟୀଲ୍ଲାଇଟ୍ ଜଳାହେଇ ବିଭୂର ହଳଦିଆ ଆଲୁଅ ଠାଏ ଠାଏ ଲାଗିଲା, ଅମ୍ବିକା କହିଲ, ମଶାଣି ଆଲୁଅ; ରାଧାବିନୋଦ କହିଲେ, ବୁଢ଼ାଲୋକର ଜୀବନ ପରି ! ତମେ ଦୁର୍ଗା, ତମ ଶୈଶବର ଭୁବନେଶ୍ୱର ପ୍ରତି ତମେ ବିଶ୍ୱାସଘାତକତା କଲ, କାରଣ ତମେ ନୂଆ ଭୁବନେଶ୍ୱର ଦେଖି ଖୁସି ହେଉଥିଲ । ତମ କମ୍ପାନିର କନଫରେନସ୍ ଏବେ ଭୁବନେଶ୍ୱରରେ ହୁଏ, କାରଣ ଏବେ ଭୁବନେଶ୍ୱରର ବଡ଼ ବଡ଼ ହୋଟେଲ ଓ ଏଠାର ଗାଉଁଲି ଗାଉଁଲି ଢଙ୍ଗ ଯୋଡ଼ିଥିପାଇଁ ତମେ ଆଗେ ଲାଜରେ ମୁହଁ ଟେକିପାରୁ ନଥିଲ, ସେ ଚାଲିଗଲା । ଏତେ ଗାଡ଼ି, ଏତେ ଲୋକ, ଏତେ ଆଲୁଅ, ଦୋକାନ ବଜାର, ବ୍ୟସ୍ତତା ଓ ଅଗକୁ ଅଗକୁ ଅବିଶ୍ରାନ୍ତ ଦୌଡ଼ିସିବାର ଅବସ୍ଥା । ଏବେ ତମର କମ୍ପାନିର ଜାପାନୀ ଅଂଶଧନଧାରୀଙ୍କୁ ଭୁବନେଶ୍ୱରକୁ ଡାକଅଣି, ତମେ ଗର୍ବରେ ଭୁବନେଶ୍ୱରକୁ ଦେଖେଇ ଦେଇ ପାରିଲ । ଶୀତତାପ ନିୟନ୍ତ୍ରିତ କୋଠରୀର ଝର୍କାରୁ ଧଉଳିଗିରି ଦେଖେଇ କହିଲ, ଦେଖ ଫୁଃ ହୁସ୍କାନ୍, ଭୁବନେଶ୍ୱର ଧଉଳିଗିରିକୁ ଲାଗିଗଲାଣି, ଭାରତ ଓ ଜାପାନ ମଧ୍ୟରେ ଯେମିତି ସମ୍ପର୍କ : ତମେ କିନ୍ତୁ ଜାଣ ଦୁର୍ଗା ତମେ ମିଛ କହିଲ, ଭୁବନେଶ୍ୱର ଧଉଳି ମର୍ତ୍ତିରେ କଳିଙ୍ଗ ଯୁଦ୍ଧର ରକ୍ତ, ଯାହା ଶୋଷକ ଓ ଶୋଷିତର ସଗ୍ରାମ, ଶୋଷିତର ପରାଜୟ ଓ ଶୋଷିତର ରକ୍ତର କାହାଣୀ, ତାହା ଏବେ ବି ସଂଘଟିତ ହେଉଛି । ତମେ ଜନ୍ମେ, ଭୁଲିନାହିଁ; ନଚେତ୍ ତମେ କାହିଁକି ବିରସ ମୁଡ଼୍ରେ ଥିବାବେଳେ କୁହ, ଧିକ୍ ମୋର କର୍ମ । ଲୋକଙ୍କର ଦୁଃଖ ଓ ବେଦେକୁ କି ମୁଁ ଅପେକ୍ଷା କରିଛି ? ପୁଣି ତମେ ହସି କୁହ, ଏତେ ଲୋକଗହଳି ଭିତରେ ମଣିଷଟିଏ ପାଇଲି କି, ଯଦି ପାଇଲି ମଣିଷଟିର ନାଁ କହିବ କି ? ରାସ୍ତାରେ ଏତେ ଗାଡ଼ି, ଏତେ କାର୍ । ତମେ ପରି କହୁଥିଲ, ହେଃ ଆଗେ କି ଲାଜ ମାଡ଼ୁଥିଲା । ହୋଟେଲ୍ ମୋଟେ ନ ଥିଲା, ଟ୍ୟାକ୍ସି ଗୋଟେ ମିଳୁ ନଥିଲା, ହବୁତ ପାଇଲ ଏବେ, କୁହ ବାଣୀବିହାରରୁ ବାପୁଜୀନଗରର ରାସ୍ତା ମର୍ତ୍ତିରେ ଦମ୍ଭାଟ୍ ଖାରବେଳ ପରି ଚାଲି ଚାଲି ଯାଇପାରିବ ? ଜନ୍ମ ଦିନରେ, ରାତି ଆଠଟା ପରେ ଟାଉନ୍ ବସ୍ ଫାଙ୍କା ହୋଇଗଲେ ଯା'ଆସ

କରିପାରୁଚ ? ତମେ କେତେଦିନ ହେଲା କହୁଚ ଦେଖିନାହଁ, ସତ କୁହ, ସତ କୁହ, ମାନିଯାଅ ! ତମ ଘରପାଖରୁ କହୁ ଆଉ ଏବେ ଧରେ, ସତ କୁହ ! ତମେ ଯଦି ଖୁସି, ତମେ ଯଦି ସତେ ତମ ପେଲ୍ : ଟାର୍ଗେଟ୍ ଓ ଶତକଡ଼ା ହିସାବ ଓ ରାଜ୍ୟସାରା ରୋଗ କାହିଁକି କମିଯାଏ, ଔଷଧ କିଣି କାହିଁକି କମିଯାଏ, କାହିଁକି କ୍ଷତିଗ୍ରସ୍ତ ହୋଇଯାଆନ୍ତି ତମ ହୋଲ୍‌ସେଲର/କମିଶନ ଏଜେଣ୍ଟ/ହେୟାର ହୋଲ୍‌ଡରମାନେ, ଯଦି ତମ ନାମ ତମକୁ ଶୋଭିନଏ ପାଲ୍‌ଟିବ ଯାଦୁବିଦ୍ୟା ସତ, ମୋହିତ କରିଦିଏ ଦୂରଦେଶୀ ଅଜ୍ଞାତ ରାଜକୁମାରର ଝିଅର ଦାଳ ସତ, ତେବେ କୁହ କାହିଁକି ଘର ଛାଡ଼ି କଟକ, ଭୁବନେଶ୍ୱର, ବାଲେଶ୍ୱର, ପୋଖରୀ, କୋର୍ଣ୍ଣା, ନୟାଗଡ଼, ବଉଦ, ବଲାଙ୍ଗୀର, ସମ୍ବଲପୁର, ଢେଙ୍କାନାଳ କେନ୍ଦୁଝରର ସବୁଠି ସବୁଠି ତମେ ବୋର୍ ହୁଅ, ସବୁଠି ସିନେମା ଦେଖ, ସିଗାରେଟ୍ ଟାଣ, ପାନ ଖାଅ, ସହକର୍ମୀମାନଙ୍କର ପ୍ରତ୍ୟେକ ଘଷରା ଗୁଳ ମନଦେଇ ଶୁଣ ଓ ହସିବାକୁ ଚେଷ୍ଟାକର । ସବୁ ହସ ବଳାତ୍କାର ଲୋଡେ, ସବୁ ଗୁଳ ପୁରୁଣା ପୁରୁଣା ବାଜେ ବାଜେ, କାହିଁକି ତମର ପାକସ୍ଥଳୀ ଦାଗ ହାଇଡ୍ରୋକ୍ଲୋରିକ୍ ଅମ୍ଳ, ତମେ ଜାଣ ପେପ୍‌ଟିକ ଅଲ୍‌ସର ଅବଶ୍ୟ ଭୋଗିବ ବୋଲି ଅଣ୍ଟାରେ ଜନ୍ମେଚ ସତ, ତମେ କାନ୍ଦୁ ଭୟଭୀତ ଓ ଜାଣ କଷ୍ଟେ କଷ୍ଟେ ଭୋଗିବ ଭୋଗିବ । ପୁଣି ତମେ କେଉଁ ଦୁଃଖେ ଗହଳ ଭିତରେ ଏକୁଲା ହୋଇଯାଅ, କ'ଣ ପାଇଁ ବସ୍‌ରେ ନାଲି ଗୁଲୁଗୁଲୁ ପତ୍ନୀ ଓ କୁନପୁଅ କଥା ନ ଭାବି ମାୟା କଥା ଭାବ, କ'ଣ ପାଇଁ ଦେଖାହେଲେ ଗପିଯାଅ, 'ମନେଅଛି ବୃନ୍ଦାବନ, ଶହେ ଛୟାଳିଶ ନମ୍ବର । ମନେଅଛି ଥାଳି ଓଲଟେଇ କାଚଗ୍ଲାସକୁ ବେଲଣା ବାଡ଼ି କରି ପରଟା ବେଲି ଦିନରାତି ଗୁଳି ଗୃହଥାଏ ଶହେ ଛୟାଳିଶ ନମ୍ବର ରୁମ୍‌ରେ । ପରୀକ୍ଷା ଯିବାପାଇଁ ସକାଳୁ ସକାଳୁ ସମସ୍ତେ ପାଠଘୋଷି ହେଉଥିବାବେଳେ ତନ୍ଦ୍ରାଳୁଆ ମାରି ସିଗାରେଟ୍ ଟାଣି ହାଂଗୁଟୁଷ୍ ପ୍ରଦ୍ୟୁମ୍ନ କହେ, ନାଁ ଭାରି ହେବ ନାହିଁ, ଆଜି ମୁଁ ପରୀକ୍ଷା ଡ୍ରପ୍ କରିବି ।' ଭୁବନେଶ୍ୱରରେ ସମସ୍ତଙ୍କୁ ଗାଳିଦିଅ, ଦୂର ହୋଇଯାଅ, ହସିଲାବେଳେ ହିଁ ଠିକ୍ ପଡ଼େ, ସତେବା ହସ କପଟ ତମେ ଜାଣି ହିଁ ନଥିଲ ଓ ନୂଆ ନୂଆ ହସିବାକୁ ଶିଖୁଅଛ । ଏମିତି ଏମିତି ତମକୁ ବ୍ୟଙ୍ଗ କରି ତମ ଦାମ୍ଭିକତା ତମ ଜେହ୍ୟାମି ମୁଁ ଭାଙ୍ଗିଦେଲି ।

ମୋତେ କ୍ଷମା କରିଦିଅ ଦୁର୍ଗା ।

ଦୁର୍ଗା, ତମେ ମାୟାକୁ ପ୍ରେମ କରୁଅଛ ବୋଲି ମୁଁ ଜାଣି ନଥିଲି । ଜାଣିଥିଲେ, ମାୟାର ଏକୋଇଶତମ ଜନ୍ମ ଦିବସରେ ତା'ପାଇଁ କବିତା ଲେଖି ନଥାନ୍ତି ଓ ତା' ବାଇଶତମ ଜନ୍ମ ଦିବସକୁ ନେଡେଦେଲେ ଆମେ ସମସ୍ତେ ବାଣୀବିହାର ଛାଡ଼ି କାଏ କୁଆଡ଼େ ଚାଲିଗଲେଣି, ଜନଦନ ଜନଶତ ଟ୍ରେନ୍ ଭିତରେ କୁଙ୍କୁଡ଼ି କାଙ୍କଡ଼, ଫୁଟ୍‌ବୋର୍ଡ଼ରେ ଝୁଲି ଝୁଲି, ନଇରେ ପହଁରି ପହଁରି, ଭୁବନେଶ୍ୱରରେ

ପହଞ୍ଚିଲ ବେଳକୁ ମାଧ୍ୱୀ କାଠଘରର ମାଧ୍ୱୀପର ବେଲ୍‌ଜିୟମ ଚାଲିଯାଇଥିଲ । ମନେ ନାହିଁ ଭୂଗୋଳ ଅବା ସାମାଜିକ ବିଜ୍ଞାନ ବୋଲ୍‌ଥରେ ପଢ଼ିଥିଲେ ବେଲ୍‌ଜିୟମ କାଚପାଇଁ ପ୍ରସିଦ୍ଧ । ମାଧ୍ୱୀ, ତମେ ମୋତେ ପ୍ରେମପତ୍ର ଲେଖିଥିଲ, ଯେବେ ଦୁର୍ଗା ତମକୁ ରୋକ୍‌ଟୋକ୍ କହିଦେଲା, ମନେ ନାହିଁ ମାଧ୍ୱୀ, ତମେ ଏଇଠି ମୋର ଆଗରେ ଆଉ ଜଣକୁ ଭଲପାଉଥିଲ, ତେବେ ଦୁର୍ବଳ ମୁହୂର୍ତ୍ତରେ ତମେ ମୋତେ ଖାଲି ବୋଲି ଡାକିଦେଲ, ଏବେ ପ୍ରେମ ନିବେଦନ କରିଦେଲ ? ଲଜ୍ଜାରେ ତମେ ଅଧାରେଇଗଲ, ଶବ୍ଦରେ ଶବ୍ଦରେ ଅବା ତମ ସଫାଇ ଛିନ୍ନଭିନ୍ନ ହୋଇଗଲା; ତଥାପି ତମେ କ୍ଷମା ପାଇଲ ନାହିଁ । ମୁଁ ତମ ଉପରେ ତ ରାଗି ନଥିଲି, ପ୍ରେମ ନିବେଦନ କରି ତ ନଥିଲି, ନିରବରେ ଆରାଧନା ଯାହା କରିଅଛି, ଏବେ ତୁମ ଉପରେ ରାଗିବାର ଶକ୍ତି ବା ସାମର୍ଥ୍ୟ ମୋର ନାହିଁ । ଜାଣେନା ଗୋ ତମେ ଭୁବନେଶ୍ୱରର ଏକ ଅରକ୍ଷିତ କୋଣର ଅଧିଷ୍ଠାତ୍ରୀ ଦେବୀପରି ଜାଜ୍ୱଲ୍ୟମାନ ହୋଇ ବସିଅଛ । ମୋତେ ପଚାରନା ମୁଁ କିପରି ଜାଣିଲି । ସେଦିନ ସେଇ ସମବାୟ ସମିତିର ଡେଜରାଗ ଦୋକାନରୁ ତମେ ବାହାରି ଆସୁଥିଲ, ତମ କାନରେ ହୀରାର କୁଣ୍ଡଳ, ତମ ଦେହରେ ବାଇଗଣୀ ପାଟଶାଢ଼ୀ, କୁଣ୍ଡଳ ଯା ଅଛିହାଦ୍ୟ କରେ ବସ୍ତ୍ରକୁ, ତମ ହାତରେ ବୋର୍ନଭିଟା, ପ୍ଲାଷ୍ଟିକ୍ ପଲିପ୍ୟାକ୍‌ର ଡବା ଓ ନିଅନ୍ ବିଜ୍ଞାପନ ସେଭିଜନ୍‌ରୁ ଝରିଆସୁଥିବା ନାଲି ନେଳି ଆଲୁଅରେ କି ସୁନ୍ଦର ଓ ନିଷ୍ପାପ ଦିଶ ତମେ । ଅନ୍ଧାରରେ ମୁଁ, ମୋ ହାତରେ ମୋ ସ୍ତ୍ରୀଙ୍କର ହାତ, ମୁଁ ଆଲୁଅକୁ ଆସିଲି ଓ ମାଧ୍ୱୀ ତମେ ଅନ୍ଧାରକୁ ଗଲ । ମୁଁ ଦୌଡ଼ିଯାଇ ପାରିଥାନ୍ତି ଓ ଦୌଡ଼ିଗଲି ମଧ୍ୟ; କିନ୍ତୁ ମୋର ପାଦ ଭୂଇଁ ସ୍ପର୍ଶ କରିବା ପୂର୍ବରୁ ଖାଟିଲି, କ'ଣ କହିବ ମୋର ସ୍ତ୍ରୀ ଯଦି ପଚାରିବେ କିଏ ସେ? କାହିଁକି ତମ ମୁହଁ ଏତେ ଉଜ୍ଜ୍ୱଳ ଦିଶେ, କେବେହେଲେ ଆଗରୁ ତ ତମ ମୁହଁରେ ଏମିତି ହସ ଦେଖି ନାହିଁ, ସତେ ଅବା ହସର ପ୍ରତ୍ୟେକ ସ୍ନାୟୁରେ ସ୍ନାୟୁରେ ଓ ସମଗ୍ର ହୃଦରେ ସେ ଏକ ନମୁନା ମାତ୍ର, ସମୁଦାୟ ହସ ଯଦି ସତେ ବିସ୍ଫୋରିତ ହେବ, ତେବେ ଦୁଃଖ, ଭ୍ରାନ୍ତି, ଅନୁଶୋଚନା ଇତ୍ୟାଦି କୁଆଡ଼େ ଲୁଚିବେ ? ତମପାଇଁ ଥିବା ସେଇ ଅନୁଚିନ୍ତା ସବୁ ଜାଣିଲାପରେ ସମ୍ମୁଖରେ ଦୂରରେ ଛୁଡ଼ାହୋଇ ଇର୍ଷାରେ ତମକୁ ଟେଲିମେଲି କଲବଲ କରି ପକେଇବ ? ମୁଁ ତମ ଉପରେ ରାଗି ନଥିଲି; କିନ୍ତୁ ଦୁର୍ଗା ଯେବେ ତୁମ ଉପରେ ରାଗିଯାଇ ତୁମକୁ ଗାଳିଦେଲା, ମୁଁ ଅସହାୟ ହୋଇ ଶୁଣିଲି; ମାତ୍ର ପ୍ରତିବାଦ କରି ପାରିଲି ନାହିଁ, ପ୍ଲିଜ୍ ଦୁର୍ଗା ହୁଏତ ତୁମ ଉପରେ ରାଗିପାରୁଥିଲା, ତୁମକୁ ଗାଳିଦେବାର ଅଧିକାର ତା'ର ଥିଲା, ମୋର ତ ସେ ଅଧିକାର ନଥିଲା, ମୁଁ କିଆଁ ପ୍ରତିବାଦ କରି ନାହିଁ, ସତେ କ'ଣ ମାଧ୍ୱୀ, ତମେ ପରିସ୍ଥିତିକୁ ବାହାହୋଇଗଲ ବୋଲି ମୁଁ ତମକୁ କ୍ଷମା କରିପାରିନାହିଁ ?

ପ୍ଲିଜ୍, ମୋତେ କ୍ଷମା କରିଦିଅ ମାଧ୍ୱୀ ।

ଫ୍ଲିନ୍, ମୋତେ କ୍ଷମା କରିଦିଅ ହେନ୍ରିୟ ।

ତମେ ଜାଣିଶୁଣି କ୍ରିଷ୍ଟି ବତ୍ମର "ଝରମାଖୀ ଗୋବର ଗୋଟେଇ" ଭୂମିକାରେ ଅଭିନୟ କରିଥିଲ । ହେନ୍ରିୟ, ଅନେକ ଅଦରକାରୀ ଭୂମିକାରେ ତମେ ଅଭିନୟ କରିଥିଲ, ଯାହା ଆଦୌ କରୁନ୍ଥ ନଥିଲା, କାରଣ କୈଶୋର ଯେତେ ବୋକା ହୋଇଥିଲେ, ଯେତେ ପାଗଳାମି ଥାଉ ପଛେ, ପ୍ରତିଭାକୁ ଅଣ୍ଡା ହୁଏ ନାହିଁ । ମାଆଙ୍କୁ ମନେ ଅଛି ନା ଜଣେ ବୋଲାଟିଏ ମୋର ପକେଟ କହିବା ଥିଲା, ଗୁଡ଼ା ଗଗ ର ସାହାଜର, ଯେମିତି ହବୁ କ୍ୟାରିଟରେ ଦୁଇ ଗୁଣ କାର୍ଟୁନ୍ ଥାଆନ୍ତି, ଯେମିତି ତମେ ଥିଲ, ଆଉ ଗୋଟେ କାର୍ଟୁନ୍ । ତମେ ଯେମିତି ଓଡ଼ିଆ ସ୍କୁଲରେ ଇଂରାଜୀ କହୁଥିବା ବେଲ୍‌ବଟ୍‌ମ୍‌ର ଓ ତମେ ହଟକୁ ହତ ଯେତେ ଦେଖିକ ଗଲ, ତମକୁ ଦେଶମାନଙ୍କରେ ଶାନ୍ତି ସୁବିଧା ମିଳିଲା ନାହିଁ ଓଳିଟି ତମକୁ ଜାତି ବିଜ୍ଞାନ ସଂସ୍ଥାର ଇଣ୍ଟରପ୍ରିଟର କାମରେ ରଖିଲା, କାରଣ ସେ ଏସିଆର ଗନ୍ତାଘରମାନଙ୍କ ଉପରେ ଗବେଷଣା କରୁଥିଲା ଓ ଏତେ ବ୍ଲାଁରେ ଲଟେ ହାତକାର୍ଯ୍ୟ ପାଉ ନଥାନ୍ତା, ତମକୁ ସେମାନେ ଆମେରିକା ନିଜାକୁ ଗ୍ଳାନିଲେ ନାହିଁ, ତମେ ସେମାନଙ୍କ ସାଙ୍ଗେ ଦଳିକାର ଭିତରୁ ପଇସା ଦେଇ ଭାରତ ଫେରି-ଥିଲ, ତମର ଦାମ୍ଭିକତା କଥା ଶୁଣି ମୋର ଗବହେଲନ୍ତି ହେନ୍ରିୟ, ମୁଁ ଭାବିଲି ବିଦେଶରେ ଥିବା ହବୁ ଭାରତୀୟ ଏହିପରି ଟିଆହେଇ ପାରିବାର ଶକ୍ତି ନଥାନ୍ତି ଓ ମୁଁ ତମକୁ ବଡ଼ ଦେଖାକୁ ଆସୁଥିଲି; କିନ୍ତୁ ବାଟରେ ଭାବିଲି କ'ଣ ଏ ଗବେଷଣା, କ'ଣ ଏହାର ମୂଲ୍ୟ, ଗୋଟାଏ ଅନାମଧେୟ ଫାଲ୍‌ରୁ ଯୌଗିକ ବସ୍ତୁର ବ୍ୟବହାର ଅନ୍ୟ ଅନେକ ଅନାମଧେୟ ଫାଲ୍‌ରୁ ଯୌଗିକ ବସ୍ତୁଙ୍କ ଉପରେ, କିଏ ଏ ବିଷୟ ଜାଣିବାକୁ ବ୍ୟଗ୍ର ଏ ସଂସାରେ ?

ମୋତେ କ୍ଷମା କରିଦିଅ ହେନ୍ରିୟ ।

ମୋତେ କ୍ଷମା କରିଦେ ଜ୍ଞାନଦା ।

ତୁ ଆସିଥିଲୁ ଜ୍ଞାନଦା, ତତେ ମୁଁ ଘରକୁ ଡାକିଲି ନାହିଁ, ଯଦିଓ ଆମେ ସାଙ୍ଗ ହୋଇ ଭୁବନେଶ୍ୱରରୁ କଟକ ଗଲେ ଓ ତୁ ଗପିଲୁ ତୋ ପୁଅ କି ଦୁଷ୍ଟ ହେଲାଣି । ଯାହା ଦୁଷ୍ଟ ହେଉପଛେ ଦୁଷ୍ଟ ହେଲେ ହିଁ ଭଲ, କାରଣ ବୁଝିଆ ହୁଅନ୍ତି ଓ ତୁ ବେଶ ଖୁସି ଅଛୁ, ବର୍ଷକ ବାରମାସ କାମ ଲାଗି ରହୁଛି, ତୁ ଏବେ 'ଏ' କ୍ଲାସ କଣ୍ଟ୍ରାକ୍ଟର ହେଲୁଣି, ବଡ଼ ବଡ଼ ଲୋକଙ୍କ ସାଙ୍ଗେ ଦେଣନେଣ କାରବାର, ତୁ ଯଦି ଏତେ ଖୁସି, ତେବେ ସତ କହ କାହିଁକି କହିଲୁ ନହଣ ଗୁଠକଥା ଓ ଗହଳିଆ ଅମୃତତୋଟାରେ ମିନକା ସାଙ୍ଗେ କଲି କଥା ଓ ନାଲି ଗୁଲୁଗୁଲୁ ହାଧବବୋହୂ କଥା ଓ ଧାନ କିଆରିରୁ ପର ଅଙ୍ଗୁଳି ଝାଡ଼ି ଆଣିବା କଥା ଓ ଗାଁ ଟାଉଟର ଚକ୍ରପାଣି ମୁହଁରେ ଚୂନକଳା ମାରିଦେବା କଥା; ଯେବେ ସେ ନବଗ୍ରହୀ ବ୍ରାହ୍ମଣୀ ବିଧବା ଘରେ ପଶିଥିଲା, କହ

କହ କାହିଁକି ଏବେ ତୁ ହସି ପାରୁନାହୁଁ. ମୋର ପିଲାଦିନରୁ ଦେଖିଆସିଛି ଅଙ୍କା ହୋଇଥିବା ହସଟି କାହିଁକି ସେଇ ମୁହାଁରେ ପୋଛି ହୋଇଯାଏ, ଏବେ ଦେଖୁନାହିଁ । ଅନେକ ଧନୀ ଲୋକଙ୍କର ତୁ ଏକ ଅଲଟବେଳୁ ସନ୍ତାନ ମାତ୍ର । କାହିଁକି ତୁ କହିଲୁ, ତୁ ଜାଣୁ ବଡ଼ବାପାଙ୍କ ଘର କଥା, ସେଆଡ଼େ କେମିତି ଛୁଟିଗଲେ । ତାଙ୍କ ବଡ଼ପୁଅ ଏବେ ସରପଞ୍ଚ ହୋଇ ବାହାରେ ବାହାରେ, ଏପଟେ ତାଙ୍କ ଝିଅ ବାହାଘର ହେଲା ସେ ଆସିଲା ନାହିଁ । ତାଙ୍କ ମଝିଆଁ ପୁଅ ଏବେ ନର୍ସଟିଏ ବାହା ହୋଇ ବାହାରେ ରହୁଛନ୍ତି । ସେ କି ଭଉଣୀ ବାହାଘରକୁ ଆସିଲା ନାହିଁ, କି ଦୁଃଖ ବଡ଼ବାପା, ତୁମେ ବଡ଼ ବଂଶଥିଲେ ଭଲ ହୋଇଥାନ୍ତା, ନହେଲେ କ'ଣ ଆଜି ଭଲ ହୋଇଥାଆନ୍ତା; ତମ ଅହଙ୍କାର, ତମ ଔଦ୍ଧତ୍ୟ, ତମକୁ କିଛି କରେଇ ଦେଲନାହିଁ । ସେଦିନସେବେଳେ, ବଡ଼ବାପା ମୁଁ ତମକୁ ଦେଖିଲି, ମାଁ ବଡ଼ ତମ ଅନ୍ତଃକାଳକୁ ଦେଖିଲି, ଦମ୍ଭରେ ଲୋକ ଭର୍ତ୍ତି ହୋଇଥିଲେ, ସେନେ ସେନି ଅମ୍ରାୟୁ ଭଦରେ କଥା ହେଉଥିଲେ ଓ ଜାଣେନା ଓ ମୁଁ ଅନେକ ଦୃଢ଼େଁ ବି ପୁରୁଣା ହମକୁ ଫେରିଗଲେ । ଖରାଦିନ ଦ'ପହରେ ଧୁଳିଧୁଳିଆ ପବନ ଓ ଗାଳିମ କ୍ଲାନ୍ତ ଓ ବଣିଆ ହାଟରୁ ଘାଟା ଡେଙ୍ଗି ଫେରିଲାବେଳେ କାକୁଡ଼ି ଦେଖିଲେ, ମହ୍ୟାଡ୍ ମାଙ୍କଡ଼ ପରି କାକୁଡ଼ି ଖାଇ ଖାଇ ଆମେ ଆସିଲାବେଳେ କାକୁଡ଼ି ମାଲିକ ଏଡେ ଏଡ଼େ ଆଖି କରି ଅନେଇଲା, କିନ୍ତୁ ପାରୁଲା ନାହିଁ ଓ ଗାଧରେ ଭାଙ୍ଗ ଖାଇ ଆମେ ହସି ହସି ଭୂତବଢ଼ା ଥିବାର ବୁଢ଼ୀ ବରଗଛ ମୂଳରେ ଠିଆହେଇ ହସିଲେ ସେ ହସିଲେ ସେମିତି ଭୂତ ଉଠି ପଳାଯିବ । ତା' ପ୍ରଳୟା ଭୂତ, ଭୂତ ପ୍ରଳୟଲା, ମନେଅଛି ପଦ୍ମ ଡରକୁଳା ଉଠଯାଇ, ଏକା ଓଁ ଠେ ପଡ଼ିଗଲା, ସେଦିନସେବେଳେ ।

ତମେ ବି ଦେଖିଲ, ମୁଁ ବି ଦେଖିଲି, ଏକାବେଳକେ ଦୁହେଁ ଅମେ ଦେଖିଲେ । ସେଇଠି ଆଗରେ ବାହାର ବେଲିଂ ଧରି ବଡ଼ବାପା ଠିଆ ହେଉଥିଲେ । ସେଇ ଅହଙ୍କାର, ସେଇ ଔଦ୍ଧତ୍ୟ, କଳା ପ୍ଲାଷ୍ଟିକ୍ ବ୍ୟାଗ୍ ଧରିଛନ୍ତି ସେ ମୁଠେଇ । ଦେଖି ତାଙ୍କ ହତାଶା, କ୍ରୋଧ ଓ ସ୍ୱାଭିମାନ । ମୋତେ କାନ୍ଦ ମାଡ଼ୁଛି । ଏତେ ଶାନ୍ତ୍ୱନା ପରେ ବଡ଼ବାପା ଛିଡ଼ାଗଲ । ତମେ ଜାଣି ଅମେ କହୁଥିଲୁ, ତମେ ମରିଗଲେ ଅମେ ଅଇଁଷ ଖାଇବୁ, ଯେଉଁଦିନ ବଡ଼ବାପା ତମେ ମରିଗଲ, ସେଇଦିନ ମୁଁ ଆଇଁଷ ଖାଇଦେଲି ଗୋଟେ ହୋଟେଲରେ । ଯଦିଓ ମୋର ଖାଇବା ମନହେଉଥିଲା, ଖାଇବା ମନେ ନ ଥିଲା । ଏଥିରେ କେଉଁ ପ୍ରତିଶୋଧ ଅବା ନେଇହେଲା, ତା' ଆଗଥରୁ ରାଜ୍ୟ ଯାଇ ମୁଁ ଶୁଣିଥିଲି, ବଡ଼ବାପା ତମର ଦେହରେ କୋଉଠି ଅଲସର୍, ଜମା ଶୁଖୁନାହିଁ । ଛଅମାସ ଅଠମାସ ହେଲା, ଲୋକେ କହୁଥିଲେ ତମେ କଷ୍ଟେ ମରିଯିବ । ମନେଅଛି ମୁଁ ତା'ର ବୃଷବର୍ଷ ଆଗେ ଗୃହଷ୍ଟେ ଜମି ମାଗିବାକୁ ଯାଇଥିଲି । ତମେ ଦୁର୍ଯୋଧନ ପରି ସୂଚ୍ୟଗ୍ର ମେଦିନୀ ଦେବାକୁ ନାହିଁକଲ । ଖଣ୍ଡା ଧରି ବାରଣ୍ଡାରୁ ଘଉଡ଼େଇ ଦେଲ । ତମେ ଏବେ କେଉଁଠି ଗୋଲକ, ପିତୃଲୋକ, ଦେବଲୋକ ଅବା ଦୁର୍ଯୋଧନ ପରି

ହଣଙ୍କରେ ସ୍ୱର୍ଗକୁ ଚାଲିଗଲ । ଯେଉଁଠି ଥାଅ, ତମର ତ କିଛି ଆଉ ମନେଥିବ ନାହିଁ ! ଏବେ ତମକୁ ତ ଅଜଣା ବୋଲି ଲାଗୁ ନ ଥିବ, ବା ଶତ୍ରୁତା ସାଧ ହେଲା । ତମ ପାଖେ ଖାଲି କଥା କ'ଣ ଜାଣ, ବଡ଼ବାପା, ମୋତେ ପ୍ରେମ କରିଥାଅ ନାହିଁ । ଶତ୍ରୁତା ବି ଥାଏ ନାହିଁ, କ୍ଷମା ମାଗିଥାଏ ନାହିଁ । ତଥାପି ପ୍ଲିଜ୍ ବଡ଼ବାପା ମୋତେ କ୍ଷମା କରିଦିଅ ।

ତରୁଣେନ୍ଦୁ, ଆପଣଙ୍କୁ ମୁଁ ଠକେଇଲି, ଉପନ୍ୟାସଟିଏ ଲେଖିଦେଲି, ହେଲେ ତହିଁରେ ଗପ ଦେଲିନାହିଁ. ଚରିତ୍ର ଦେଲିନାହିଁ, ପ୍ଲଟ୍ ଦେଲିନାହିଁ, କୌଣସି ନାଟକୀୟତା ତା' ଅନ୍ତରାଳରେ ରହିଲା ନାହିଁ । ଆପଣ କହିଲେ, "କାହିଁକି ଏ ଉଦ୍ଭଟ ଲେଖା ଆପଣ ଲେଖନ୍ତି, ମୁଁ ଏତେ ବଡ଼ ବଡ଼ ଲେଖା ପଢ଼ୁଛି, କୋଉଠି ତ ଆପଣଙ୍କ ଲେଖା ପଢ଼ୁନାହିଁ । କାହିଁକି ଆପଣ ଏମିତି ଲେଖା ଲେଖୁଛନ୍ତି, କ'ଣ ଯା'ର ମାନେ ?" ମନେକରନ୍ତୁ ତରୁଣେନ୍ଦୁ ବାବୁ ସୂର୍ଯ୍ୟ ଉଏଁ, ଉଠେ ଓ ଅସ୍ତ ହୁଏ, କେତେ ସହଜ କଥାଟି ! ସେମିତି ଜୀବନ, ସୂର୍ଯ୍ୟର ଉଦୟ ଓ ଅସ୍ତ ଭିତରେ କୌଣସି ପରିବର୍ତ୍ତନ ଘଟେ ନାହିଁ ତ, ତଥାପି କେତେବଡ଼ ବଦଳିଯାଏ ? କୌଣସି ଅଘଟଣା, ଘଟଣା ନାହିଁ, କୌଣସି ଉଚ୍ଛୃଙ୍ଖଳତା ନାହିଁ । ସୂର୍ଯ୍ୟ ଏମିତି ଧୀରେ ଧୀରେ ଗ୍ରାସିବା ବ୍ୟତୀତ କିଛିବି ତ କରିନାହିଁ । ତଥାପି ଏକୁ କିଏ ବର୍ଣ୍ଣନା କରିବ, କିଏ ପ୍ରତିରୋଧ କରିବ ? ଅନ୍ୟ ପକ୍ଷରେ ଗପରେ କେତେ କଥା ଥାଏ, କିଏ ଝିଅଟି କେହି ବୁଢ଼ା ହୁଏ, ମଦ ପିଏ, ଧନୀ ହୁଏ, ଦରିଦ୍ର ହୁଏ, କାହାକୁ ରୋଗ ହୁଏ, ଆଉ କେହି ମରିଯାଏ; କିନ୍ତୁ ତୁଳନା କର ଏ ବିସ୍ତୃତ ନାୟିକାଟିକୁ ଦେଖ, କିଛି କରେନାହିଁ ସେ କୁନ୍ତୀ, କିଛି ଘଟେନାହିଁ ତା' ଜୀବନରେ ଥରେ ବି କାହାରିକୁ ବାହୁରେ ଆଲିଙ୍ଗନ କରିନେବାର ମାଙ୍ଗଳିକ ମୁହୂର୍ତ୍ତ ଅଛେନାହିଁ ତା' ଜୀବନରେ । ତଥାପି କି କରୁଣ, ନିର୍ଜନ, ଉଦାସ ସୂର୍ଯ୍ୟାସ୍ତ ତା'ର ? ମୁଁ କେଉଁଠୁ ଗପ ଆଣିବି, ପ୍ଲଟ୍ ଆଣିବି, ବର୍ଣ୍ଣନା ଆଣିବି ଓ ତା' ପାଇଁ ଯୁକ୍ତି ଦେବି ? ପ୍ଲିଜ୍ ମୋତେ କ୍ଷମା କରିଦେବେ ତରୁଣବାବୁ, ମୁଁ ଜାଣିଶୁଣି ଆପଣଙ୍କୁ ଠକାଇ ନାହିଁ, ମୋତେ ଲେଖି ଆସିଲା ନାହିଁ । ମୋତେ କମା ଲେଖିଆସେ ନାହିଁ ! ପ୍ଲିଜ୍ ପାଠକେ, ମୁଁ ଆଜୀବନ ଠକେଇଲି, ମୋତେ କ୍ଷମା କରିଦିଅ ।

ତମେ ଯଦି ସତରେ ଥାଆନ୍ତ ବୋଲି ମୋର ବିଶ୍ୱାସ ଥାଆନ୍ତା, ମୁଁ ତମକୁ ଅବିଶ୍ୱାସ କରିଥାନ୍ତି । ଏବେ ତମେ ନାହିଁ ବୋଲି ତମ ଥିବାକଥା ବିଶ୍ୱାସ କରିବାକୁ ଇଚ୍ଛାହୁଏ । ଅଥଚ କି ପ୍ରକାରର ସ୍ଥୂଳ ବୌଦ୍ଧିକ ଅହମିକା ପ୍ରତିରୋଧ କରିଦିଏ । ଏତେ ଟିକେ ଆଶ୍ୱାସନା; ତମକୁ ନିମନ୍ତ୍ରଣ କରିପାରିଲି ନାହିଁ ଓ ନାହିଁ ବୋଲି ନିଶ୍ଚିତ ହୋଇ ନିର୍ଲିପ୍ତ ହୋଇପାରିଲି ନାହିଁ । ପ୍ଲିଜ୍, ମୋତେ କ୍ଷମା କରିଦିଅ ଭଗବାନ ଯଦି ତମେ ଦୈବାତ୍ ସତରେ ଥାଅ ।

